ମେଜିକ୍ ମେସିନ୍ – ଲେଖକ : ସୁରେନ୍ଦ୍ର ନାଥ ସାହୁ, ସୁଧା ପ୍ରକାଶନ, ବାଖରାବାଦ୍, କଟକ – ୭୫୩ ୦୦୨, ପ୍ରଚ୍ଛଦ : ରଂଜିତ୍ ପରିଡ଼ା, ଡି.ଟି.ପି. : ୟୁନିଟେକ୍, କଟକ, ମୁଦ୍ରଣ : କାଳିଆ ପ୍ରିଣ୍ଟର୍ସ, କଟକ ।



**MAGIC MACHINE** – Author : Surendranath Sahoo, Published by : Sudha Prakashan, Bakharabad, Cuttack-753 002, Orissa (India), Cover Design : Ranjit Parija, D.T.P. by : Unitech, Cuttack, Printer : Kalia Printers, Cuttack.



First Edition : 2006

ISBN : 81-7704-075-8

Price : Rs. **30**

## ଉତ୍ସର୍ଗ

ଯେଉଁ କିଶୋର ପାଠକ / ପାଠିକାମାନଙ୍କ

ଆଂତରିକ ପ୍ରେରଣାପାଇ

ମୁଁ ଏ ଗଳ୍ପଗୁଡ଼ିକ

ଲେଖିଛି,

ସେହି ବିଜ୍ଞାନପ୍ରେମୀ

ପିଲାମାନଙ୍କ ହାତରେ...

—ଲେଖକ

# ସୂଚିପତ୍ର





# ପ୍ରାକ୍ ସୂଚନା

କୌଣସି ସାଧାରଣ ଘଟଣାକୁ ଅସାଧାରଣ ଦୃଷ୍ଟିରେ ଦେଖିବା ଏବଂ ତାକୁ ବିଶ୍ଳେଷଣ କରି ଅଧିକ ଜାଣିବାର ଆଗ୍ରହ ଓ କୌତୂହଳ ହିଁ ମଣିଷକୁ ନେଇଯାଏ ବିଜ୍ଞାନ ଜଗତକୁ । ଆଜିର ଏହି 'ଇନ୍‌ଟରନେଟ୍ ଯୁଗ'ରେ ସମଗ୍ର ମଣିଷସମାଜ ବିଜ୍ଞାନାଭିମୁଖୀ । ସମସ୍ତେ ଆଜି ବିଜ୍ଞାନର ଆଶୀର୍ବାଦ ପାଇ ବଳୀୟାନ୍ । ପଚାଶ ବର୍ଷ ପୂର୍ବେ ଯାହା କଳ୍ପନା କରାଯାଉଥିଲା, ବିଜ୍ଞାନ ବଳରେ ଆଜି ତାହା ବାସ୍ତବରେ ପରିଣତ ହୋଇପାରିଛି । ଆଜି ଯାହା କଳ୍ପନା କରାଯାଉଛି, ଆଗାମୀକାଲି ଯେ ତାହା ବାସ୍ତବ ରୂପ ନ ନେବ, ତାହା କିଏ କହିପାରିବ ?

ଠିକ୍ ଏହି ତଥ୍ୟକୁ ଆଧାର କରି ଲେଖାଯାଇଛି 'ମେଜିକ୍ ମେସିନ୍' । ଏହାର ପ୍ରତ୍ୟେକଟି ଗଳ୍ପକୁ ଅତି-କଳ୍ପନାର ରଙ୍ଗରେ ରଙ୍ଗିନ୍ କରିବାକୁ ଚେଷ୍ଟା କରାଯାଇଛି । କଳ୍ପନାଗୁଡ଼ିକ କିନ୍ତୁ ବହୁଚର୍ଚ୍ଚିତ ବିଜ୍ଞାନ-ତଥ୍ୟ ଉପରେ ଆଧାରିତ ।

ଅନ୍ତରୀକ୍ଷରେ ପୃଥିବୀ ପରି ଆଉ କୌଣସି ଜୀବମଣ୍ଡଳ ଅଛି କି ? ଏବେ ବି ଏହାର ଅନୁସନ୍ଧାନ କାମ ଚାଲିଛି । ଅଜ୍ଞାତ ଗ୍ରହର ଅଦ୍ଭୁତ ଜୀବ-ଜଗତକୁ ନେଇ ବିଭିନ୍ନ ଭାଷାରେ ସଂଖ୍ୟାଧିକ ରହସ୍ୟମୟ କାହାଣୀ ଲେଖାହୋଇଛି । ଏ ବହିରେ ଥିବା 'ଉଲୁନା ଗ୍ରହର ଯନ୍ତ୍ରମଣିଷ' ମଧ୍ୟ ସେହି ପର୍ଯ୍ୟାୟର । 'ମଣିଷ କ୍ଲୋନିଂ', ବିଜ୍ଞାନଜଗତର ଏକ ବିବଦମାନ ସମସ୍ୟା । ଆଗକୁ ହୁଏତ ଏ ସମସ୍ୟାର ସମାଧାନ ହୋଇସାରିଥିବ ଏବଂ 'ଅଙ୍ଗ ପ୍ରତ୍ୟାରୋପଣ ବିଜ୍ଞାନ' ଦ୍ୱାରା ଅଦ୍ଭୁତ ମିଶ୍ର-ଜୀବମାନେ ପୃଥିବୀପୃଷ୍ଠରେ ଦେଖିବାକୁ ମିଳିବେ । ଏହି କଳ୍ପନାର ରୂପ ଦିଆଯାଇଛି 'ଲାଇଗର ସଫାରୀ' ଗଳ୍ପରେ । ବିଭିନ୍ନ ରାସାୟନିକ ପ୍ରତିକ୍ରିୟା ଫଳରେ ବେଳେବେଳେ ପ୍ରକୃତିକୋଳରେ ଅଲୌକିକ ଘଟଣାମାନ ଘଟିଥାଏ । ଏହି ତଥ୍ୟକୁ ଆଧାର କରି ଅନେକ ଇଂରାଜୀ 'ଫିକ୍ସନ୍-ଫିଲ୍ମ' ତିଆରି ହୋଇଛି । ମଣିଷ ଚେଷ୍ଟା କଲେ ମଧ୍ୟ ରାସାୟନିକ-ବିଜ୍ଞାନ ବଳରେ ଅତିକାୟ ଓ ଅତିକ୍ଷୁଦ୍ର ଜୀବ ସୃଷ୍ଟି କରିପାରେ । 'ଚକୋଲେଟ୍‌ର ଚମତ୍କାରିତା' ଏବଂ 'ସହରରେ ଡାଇନୋସର'

ଗଳ୍ପ ଦୁଇଟି ଏହି ତଥ୍ୟ ଉପରେ ଆଧାରିତ । ମଣିଷ ଆଜି ରୋବଟ୍ ଗଢୁଛି ! ହୁଏତ ଦିନ ଆସିବ, 'ରୋବଟ୍' ନିଜେ ସୃଷ୍ଟି କରିପାରିବ ଆଉ ଏକ ଦୁନିଆ, ଯେଉଁଠି ମଣିଷ ହେବ ତା'ର କ୍ରୀତଦାସ ! ଏହି ବିଷୟକୁ ଆଧାର କରି ସୃଷ୍ଟି ହୋଇଛି 'କୁହୁକ ଦ୍ୱୀପର ରାଜା' ଗଳ୍ପଟି ।

ଶେଷରେ 'ମେଜିକ ମେସିନ୍' ଗଳ୍ପର ଅସଲ କଳ୍ପନାକାର ଏ ଲେଖକ ନୁହେଁ; ପ୍ରଖ୍ୟାତ ବିଜ୍ଞାନଲେଖକ ଏଚ୍. ଜି. ୱେଲସ୍ । ତାଙ୍କର ବହୁଚର୍ଚ୍ଚିତ ବିଜ୍ଞାନ ଉପନ୍ୟାସ 'ଟାଇମ୍ ମେସିନ୍'ର ଅଲୌକିକ ବିଜ୍ଞାନତଥ୍ୟକୁ ଆଧାର କରି ଅଙ୍କୁରିତ ହୋଇଛି 'ମେଜିକ୍ ମେସିନ୍' ଗଳ୍ପଟି । ଆମ ବିଜ୍ଞାନପ୍ରେମୀ ପାଠକପାଠିକା କିଶୋର-ବିଜ୍ଞାନୀମାନେ ଏହି ଅତିକଳ୍ପନାମୂଳକ କାହାଣୀଗୁଡ଼ିକ ପଢ଼ି ଆଗାମୀ ଯୁଗର ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ସମ୍ପର୍କରେ ଜାଣିବାପାଇଁ ଅଧିକରୁ ଅଧିକ କୌତୂହଳୀ ହୁଅନ୍ତୁ, ଜିଜ୍ଞାସୁ ହୁଅନ୍ତୁ, ଏ ଲେଖକ ଏତିକି ହିଁ ଆଶା କରେ ।

ଏ ବହିରେ ଥିବା ଅଧିକାଂଶ ଗଳ୍ପ 'ସଂସାର', 'ନନ୍ଦନକାନନ', 'ବିଜ୍ଞାନଦିଗନ୍ତ' ଆଦି ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଛି । 'ମେଜିକ୍ ମେସିନ୍'ର ପ୍ରକାଶନ ଅବସରରେ ମୁଁ ସମ୍ପୃକ୍ତ ସମ୍ପାଦକମାନଙ୍କୁ ମୋ'ର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

—ଲେଖକ

# 'ଉଲୁନା' ଗ୍ରହର ଯନ୍ତ୍ର ମଣିଷ

ଦୁଇ ହଜାର ଏକ ମସିହା ଅଗଷ୍ଟ ସାତ ତାରିଖର ଘଟଣା । ସେଦିନ ଥାଏ ରବିବାର । ସ୍କୁଲ ଛୁଟି । ଆମେ ଦଳେ ପିଲା ପିକ୍‌ନିକରେ ବାହାରିଲୁ । ସହରଠାରୁ ପ୍ରାୟ ତିରିଶି କି.ମି. ଦୂରରେ ଥିବା 'ବୁଲାଝରେ' ନାମକ ଗୋଟେ ସୁନ୍ଦର ସ୍ଥାନ ଆଗରୁ ଠିକ୍ କରାହୋଇଥାଏ । ପାଖରେ ଝରଣା । ଚତୁଃପାର୍ଶ୍ୱରେ ପାଚେରି ପରି ଛୋଟଛୋଟ ପାହାଡ଼ । ହିଂସ୍ର ଜନ୍ତୁଶୂନ୍ୟ ପତଳା ଜଙ୍ଗଲ । ପିକ୍‌ନିକ୍ ପାଇଁ ପୂରାପୂରି ଉପଯୁକ୍ତ ସ୍ଥାନ ।

ଆମେ ଗାଡ଼ି କରି ସେଠାରେ ପହଞ୍ଚୁ ପହଞ୍ଚୁ ଦିନ ଦଶଟା । ଝରଣା କୂଳରେ ଗୋଟେ ପରିଷ୍କାର ସମତଳ ଜାଗା ଦେଖି ଗାଡ଼ି ରଖିଲୁ । ଚଟାପଟ ଗାଡ଼ିରୁ ଜିନିଷପତ୍ର ଓହ୍ଲାଇ, ରୋଷେୟାଙ୍କ ଜିମା ଦେଇ, ବାହାରିପଡ଼ିଲୁ ଆମେ ଜଙ୍ଗଲ ଭ୍ରମଣରେ ।

'ମନୁ' ଆଉ ମୁଁ ଭାରି ସାଙ୍ଗ । ଆମେ ଦୁହେଁ ଆଗରୁ ଠିକ୍ କରିଥାଉ ଯେ ସାଙ୍ଗହେଇ ବୁଲିବୁ । ଜଙ୍ଗଲ ଭିତରେ ନପଶି ଆମେ ପାହାଡ଼ ଚଢ଼ିବାକୁ ସ୍ଥିର କଲୁ । ଝରଣାଟା ପାହାଡ଼ିଆ ବୁଲାଣି ରାସ୍ତା ପରି ଅଙ୍କେଇ ବଙ୍କେଇ ବହିଯାଉଥାଏ । ଝରଣା କୂଳେ କୂଳେ ଆମେ ପାହାଡ଼ ଉପରକୁ ଉଠିଲୁ । ପାଗ ମେଘୁଆ ଥିଲା । ତେଣୁ ଖରା ବାଧୁ ନଥାଏ । ମଜା ବି ଲାଗୁଥାଏ ।

ପାହାଡ଼, ଝରଣା ଓ ସବୁଜ ବନାନୀର ସୌନ୍ଦର୍ଯ୍ୟ ଉପଭୋଗ କରି ଯାଉଯାଉ ଆମେ ଅନେକ ଉପରକୁ ଉଠିଗଲୁ । ହାଲିଆ ଲାଗିଲା । କିଛି ମିଠାମିଠା ଜଙ୍ଗଲୀ କୋଳି ମୁଁ ତୋଳି ଧରିଥାଏ । ତାକୁ ଖାଇ ଝରଣାରୁ ପେଟେ ଲେଖା ପାଣି ପିଇଲୁ । ଗଛ ଛାଇ ଦେଖି ଗୋଟେ ଚିକ୍‌କଣ ପଥର ଉପରେ ଲମ୍ବ ହେଇ ଟିକିଏ ଗଡ଼ିପଡ଼ିଲୁ ।

ସମୟ ସେତେବେଳକୁ ସାଢ଼େ ଏଗାରଟା । ଆମ ଦୃଷ୍ଟି ଲମ୍ବି ରହିଥିଲା ମେଘୁଆ ଆକାଶ ଆଡ଼େ । ଅବଶ ଆଖିପତା ମୋର ଲାଗି ଆସୁଥାଏ ... । ଠିକ୍ ଏତିକିବେଳେ, ହଠାତ୍ କ'ଣ ଗୋଟେ ଚକ୍‌ଚକ୍ କଲା ଆକାଶରେ ! ଚମକିପଡ଼ିଲୁ ଆମେ । ମନେ ହେଲା, ଉଜ୍ଜ୍ୱଳ ନକ୍ଷତ୍ର ପରି କିଛି ଗୋଟେ ଆମରି ଆଡ଼କୁ ମାଡ଼ି ଆସୁଛି । ଆମେ ଧଡ଼ପଡ଼ ହେଇ ଉଠି ବିସ୍ମୟରେ ଚାହିଁରହିଲୁ ଆକାଶକୁ । କ'ଣ ସେ ବସ୍ତୁଟା ହଠାତ୍ ଠଉରେଇ ପାରିଲୁନି । ଆଉ ଟିକେ ପାଖକୁ ଆସିବା ପରେ ଯାହା ଦେଖିଲୁ, ନିଜ ଆଖିକୁ ବିଶ୍ୱାସ କରିପାରିଲୁନି ।

ସେଇଟା ଥିଲା ଗୋଟେ ଉଜ୍ଜ୍ୱଳ ତ୍ରିକୋଣାକାର କାଚ୍‌ଘର । ଦେଖିବାକୁ ଅବିକଳ କାଚ୍ ପ୍ରିଜମ୍ ପରି । ଦର୍ପଣ ପରି ଚକଚକ କରୁଥିଲା ତା'ର ପୃଷ୍ଠଦେଶ । ଆମ ପାଖରୁ ପ୍ରାୟ ୫୦ ମିଟର ଦୂରରେ ଶୂନ୍ୟରେ ଝୁଲି ରହିଲା ଘରଟା ।

ପିଲାମାନେ, ତୁମେ ସବୁ ଉଡ଼ନ୍ତା ଥାଳିଆ ବିଷୟରେ ପଢ଼ିଥିବ ; ହେଲେ ଆମ ଆଗରେ ଯେଉଁ ଅଦ୍ଭୁତ ଯାନଟା ଝୁଲି ରହିଥିଲା, ସେଇଟା ଥିଲା 'ଉଡ଼ନ୍ତା ଘର' ! ତା' ଭିତରେ ଗୋଟେ ବିଚିତ୍ର ପ୍ରାଣୀ ଥିବା ପରି ମନେ ହେଉଥିଲା ।

ଭୟ ଓ ବିସ୍ମୟରେ ଆମେ ଦୁହେଁ ପରସ୍ପରକୁ ଭିଡ଼ାଭିଡ଼ି ହୋଇ ରହିଥାଉ । ମୁଁ ମନୁର କାନ ପାଖରେ ଫିସ୍ ଫିସ୍ କରି ପଚାରିଲି, ''ଭାଇ ... ଏଇଟା କ'ଣ କିରେ ? ଅନ୍ୟ କୌଣସି ଗ୍ରହର ଉଡ଼ନ୍ତା ଯାନ କି ?'' ମନୁ ମଧ୍ୟ ଧୀର କଣ୍ଠରେ କହିଲା, ''ତୋ ଅନୁମାନ ବୋଧେ ଠିକ୍ । ଦେଖ, ତା' ଭିତରେ ଥିବା ସେ ବିଚିତ୍ର ଜୀବଟା ଆମରି ଆଡ଼କୁ କେମିତି ଅନାଇରହିଛି ।''



'ମନୁ'ର ବାକ୍ୟ ଶେଷ ହେବା ପୂର୍ବରୁ ଗୋଟେ ଅଦ୍ଭୁତ କାଣ୍ଡ ଘଟିଗଲା । ହଠାତ୍ ସେ ଯାନ ଭିତରୁ ଗୋଟେ ଲାଲ ଆଲୋକ ରଶ୍ମି ଲମ୍ବି ଆସିଲା ଆମରି ଆଡ଼କୁ । ଭୟରେ ମୁଁ

ଆଖି ବନ୍ଦ କରି ପକାଇଲି । ଆଲୋକ ରେଖାଟା ତୀରବେଗରେ ଆସି ମନୁ ଦେହରେ ଲାଗିଗଲା । ଯେମିତି ଲାଗିଛି, ମନୁ ସେଠୁ ଅଦୃଶ୍ୟ ହୋଇଗଲା । ଏ ଘଟଣା ଦେଖି ମୋ ମୁଣ୍ଡ ଘୂରାଇବାକୁ ଲାଗିଲା । ଅଚେତ ହୋଇ ମୁଁ ସେଠାରେ ପଡ଼ିଗଲି । ତା'ପରେ କ'ଣ ଘଟିଲା ମୁଁ କିଛି ଜାଣିନି ।

କିଛି ସମୟ ପରେ ମୋ ଚେତା ଫେରିଲା । ଆଖି ଖୋଲି ଦେଖେତ 'ମନୁ' ମୋ ମୁହଁରେ ପାଣିଛିଟା ମାରୁଛି । ମୁଁ ଉଠିପଡ଼ି ତାକୁ କୁଣ୍ଢାଇ ପକାଇଲି । ଉପରକୁ ଦେଖେ ତ ସେ ଯାନଟା ଆଉ ନାହିଁ । ପଚାରିଲି, ''ମନୁ ... ଏସବୁ କ'ଣ ହେଇଗଲା ? ସେ ଅଦ୍ଭୁତ ଯାନଟା ଗଲା କୁଆଡ଼େ ?''

ମନୁ କହିଲା, ''ଭାଇ, ଆଜି ମୁଁ ଯେଉଁ ବିଚିତ୍ର ଅଭିଜ୍ଞତା ହାସଲ କରିଛି, ଜୀବନରେ ଭୁଲିପାରିବିନି ।''

''କିନ୍ତୁ ତୁ ହଠାତ୍ କୁଆଡ଼େ ଅନ୍ତର୍ଦ୍ଧାନ ହେଇଗଲୁ ? ତୋ'ର କିଛି ହେଇନି ତ ?''

ମନୁ କହିଲା, ''ପୂରା ଘଟଣାଟା କହିବି, ତୁ ବିଶ୍ୱାସ କରିବୁଟି ?''

''ଆରେ ମୁଁ ପରା ନିଜ ଆଖିରେ ଦେଖିଲି, ବିଶ୍ୱାସ କରିବିନି କେମିତି ?''

ତା'ପରେ ମନୁ ତା' ଅଭିଜ୍ଞତାର କାହାଣୀ ଆରମ୍ଭ କଲା, ''ଆଲୋକ ରେଖାଟା ମୋ ଆଡ଼କୁ ଯେତେବେଳେ ଆସିଲା, ମୁଁ ମଧ୍ୟ ଭୟରେ ଆଖି ବନ୍ଦ କରି ପକାଇଲି । ତା'ପରେ କ'ଣ ହେଲା ମୋତେ ଜଣାନାହିଁ । କିନ୍ତୁ ଆଖି ଖୋଲି ଦେଖିବା ବେଳକୁ ମୁଁ ସେ ଝୁଲନ୍ତା କାଚଘରେ ଠିଆ ହୋଇଥାଏ । ଭିତରଟା ତା'ର ଖୁବ୍ ଉଜ୍ଜ୍ୱଳ ଦେଖାଯାଉଥିଲା ଏବଂ ଗୋଟେ ପାଖରେ ଆଲମାରି ପରି କିଛି ଗୋଟେ ଯନ୍ତ୍ର ଥିଲା । ସେ ବିଚିତ୍ର ଜୀବଟା ସେଠାରେ ଠିଆ ହୋଇଥାଏ । ସେ ମୋତେ ଖୁବ୍ କୋମଳ କଣ୍ଠରେ ଅଭିନନ୍ଦନ ଜଣାଇଲା ଏବଂ ଓଡ଼ିଆରେ କହିଲା, ''ମନୁ, ଡର ନାହିଁ । ମୁଁ ତୁମର କିଛି କ୍ଷତି କରିବି ନାହିଁ । ମୋ କାମ ସରିବା ପରେ ତୁମକୁ ନେଇ ପୁଣି ତୁମ ସାଙ୍ଗ ପାଖରେ ଛାଡ଼ିଦେବି ।''

ମୁଁ ସାହସ ସଞ୍ଚୟ କରି ପଚାରିଲି, ''ଆପଣ କିଏ ? ମୋ ପାଖରେ ଆପଣଙ୍କ କାମ କ'ଣ ?

ସେ କହିଲେ, ''ଦେଖ, 'ଉଲୁନା' ଗ୍ରହର ମୁଁ ଜଣେ ଯନ୍ତ୍ର-ମଣିଷ । ତୁମକୁ ଜଣାଥିବ, ଏଠୁ ପ୍ରାୟ ଉଣେଇଶ ହଜାର ଆଲୋକବର୍ଷ ଦୂରରେ ଆଉ ଗୋଟେ ସୌର-

ଜଗତ ଅଛି । ସେଠି ଠିକ୍ ତୁମ ପୃଥିବୀ ପରି ଗ୍ରହଟିଏ ବି ଅଛି – ଯାହାର ନାମ 'ଉଲୁନା' । ଉଲୁନାରେ ମଧ୍ୟ ତୁମପରି ମଣିଷ ସଭ୍ୟତାର ଯୁଗ ଚାଲିଛି । କିନ୍ତୁ ସେ ଗ୍ରହର



ବାସିନ୍ଦା ତୁମମାନଙ୍କଠାରୁ ଢେର୍ ବୁଦ୍ଧିମାନ ଏବଂ ବିଜ୍ଞାନରେ ଅନେକ ଆଗୁଆ । ସେମାନେ ବିଜ୍ଞାନବଳରେ ମୋତେ ସୃଷ୍ଟି କରି ଜୀବମଣ୍ଡଳ ଅନୁସନ୍ଧାନ କାମରେ ପଠାଇଛନ୍ତି । ମୋର

କାମ ହେଲା, ଆମ ଛାୟାପଥ ଭିତରେ ସର୍ବମୋଟ କେତୋଟି ଜୀବମଣ୍ଡଳ ଅଛି ତା'ର ସବିଶେଷ ତଥ୍ୟ ସଂଗ୍ରହ କରିବା ।

ମୁଁ କହିଲି, ''ଆମ ଅନ୍ତରିକ୍ଷ ବିଜ୍ଞାନୀମାନେ ମଧ୍ୟ ଏ ଅନୁସନ୍ଧାନରେ ଲାଗିଛନ୍ତି । କିନ୍ତୁ ଏପର୍ଯ୍ୟନ୍ତ ଆମକୁ କିଛି ସଠିକ ତଥ୍ୟ ମିଳିନି ।''

ସେ କହିଲେ, ''ଆମେ ତାହା ଜାଣୁ । ତୁମ ଯୁଗର ବିଜ୍ଞାନୀମାନେ ହଜାର ହଜାର ବର୍ଷ ଆଲୋକବର୍ଷ ଦୂରରେ ଥିବା କୌଣସି ଜୀବମଣ୍ଡଳ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବାକୁ ଏପର୍ଯ୍ୟନ୍ତ ସକ୍ଷମ ହୋଇନାହାନ୍ତି । ଏଥିରେ ସଫଳତା ପାଇବା ପାଇଁ ଆହୁରି ଅନେକ ବର୍ଷ ଲାଗିଯିବ ।''

ମୁଁ ପଚାରିଲି, ''ଆଚ୍ଛା ... ମୋ' ପାଖରେ ଆପଣଙ୍କ କାମ କ'ଣ ?''

ସେ କହିଲେ, ''ମନୁ, ତୁମେ ବଡ଼ ଭାଗ୍ୟବାନ୍ ପିଲା । ଆମ 'ପ୍ରିଜମ-ରଶ୍ମି' ପୃଥିବୀର ଶହଶହ କୋଟି ମଣିଷ ଭିତରୁ ତୁମକୁ ବାଛିଚି । ତୁମକୁ ନେଇ ପୃଥିବୀର ଆଧୁନିକ ମଣିଷ ସମାଜ ସମ୍ପର୍କରେ ମୁଁ ଏବେ ବିଶ୍ଳେଷଣ ଆରମ୍ଭ କରିବି ।''

''ତା' ମାନେ ଆପଣ ମୋତେ 'ଉଲୁନା' ଗ୍ରହକୁ ନେଇଯିବେ ?'' ଆତଙ୍କିତ କଣ୍ଠରେ ପ୍ରଶ୍ନକଲି ମୁଁ ।

ହସି ହସି ସେ କହିଲେ, ''ଆରେ ... ନା ନା, ଭୟ କରନି । ତୁମମାନଙ୍କ ପରି ଆମେ ଏଡ଼େ ଅନ୍ୟାୟୀ କିମ୍ବା ନିଷ୍ଠୁର ନୁହଁ । ବିଜ୍ଞାନାଗାରରେ ପରୀକ୍ଷା କରିବା ପାଇଁ ତୁମେମାନେ ଯେମିତି ମୂଷା, ବେଙ୍ଗ, ସାପ ଆଦି ପ୍ରାଣୀଙ୍କୁ ଚିରି, ଫାଡ଼ି ଫୋପାଡ଼ି ଦିଅ, ଆମେ ସେମିତି କରୁନା । ଆମେ ଜୀବଟିଏ ପରୀକ୍ଷା କରିବା ପୂର୍ବରୁ ତା'ର ଅବିକଳ ନକଲଟିଏ ସୃଷ୍ଟି କରୁ, ତା'ପରେ ତା'ର ପରୀକ୍ଷା କରୁ । ତୁମେ ସେ ଯନ୍ତ୍ର ଭିତରେ ଯାଇ ଠିଆହୁଅ, ଜାଣିପାରିବ ।''

ମୁଁ ତାଙ୍କ କଥା ମାନି ଆଲମାରି ପରି ଦେଖାଯାଉଥିବା ସେ ଯନ୍ତ୍ରଟା ଭିତରେ ଯାଇ ଠିଆହେଲି । ହଠାତ୍ ଗୋଟେ ସେକେଣ୍ଡ ପାଇଁ ମୋ ଆଖି ଆଗରେ ଅନ୍ଧାର ଘୋଟିଗଲା । ପୁଣି ଉଜ୍ଜ୍ୱଳ ଦିଶିଲା ଚତୁର୍ଦ୍ଦିଗ । ମୁଁ ମେସିନ୍ ଭିତରୁ ବାହାରି ଆସିଲି । ଦେଖେତ ମୋ ପଛେ ପଛେ ଅବିକଳ ମୋରି ପରି ପିଲାଟିଏ ତା' ଭିତରୁ ବାହାରି ଆସୁଛି । ବରଂ ଦର୍ପଣ

ପ୍ରତିବିମ୍ବରେ କିଛି ଖୁଣ ଥାଇପାରେ, କିନ୍ତୁ ଆମ ଦୁହିଁଙ୍କ ଚେହେରାରେ କାଣିଚାଏ ବି ପ୍ରଭେଦ ନଥିଲା । ଏ ଘଟଣା ଦେଖି ମୁଁ ପରା ବିସ୍ମୟରେ ସ୍ତମ୍ଭୀଭୂତ ।

ଯନ୍ତ୍ର ମଣିଷ କହିଲେ, ''ଦେଖ, ତୁମ ଯୁଗର ବିଜ୍ଞାନ ଏତେ ଅଗ୍ରଗତି କରିନି ବୋଲି ଏ ଘଟଣା ତୁମକୁ ଆଶ୍ଚର୍ଯ୍ୟ ଲାଗୁଛି । ତୁମେ ମେସିନ୍ ସାହାଯ୍ୟରେ ଖଣ୍ଡେ ଲେଖା କାଗଜର ହିଁ ଅବିକଳ ନକଲ ସୃଷ୍ଟି କରିପାର । ଗୋଟେ ଜୀବନ୍ତ ପ୍ରାଣୀର ଏ ପ୍ରକାର ନକଲ କରିବାକୁ ତୁମକୁ ଆହୁରି ଶହ ଶହ ବର୍ଷ ଲାଗିପାରେ । ହଉ ... ତୁମ ନକଲ ମୋ ପାଖରେ ରହିଲା । ଏବେ ତୁମେ ତୁମ ସାଙ୍ଗ ପାଖକୁ ଫେରିଯାଅ ।'' ଏତିକି କହି ସେ ଆଉ ଗୋଟେ ଆଲୋକ ରଶ୍ମି ମୋ ଆଡ଼କୁ ନିକ୍ଷେପ କଲେ । ତା'ପରେ ହଠାତ୍ ମୁଁ ଆସି ତୋ' ପାଖରେ ପହଞ୍ଚିଗଲି ।''

'ମନୁ'ର କାହାଣୀ ସରିବା ବେଳକୁ ବିସ୍ମୟରେ ମୁଁ ପୂରା କାଠ ପାଲଟି ଯାଇଥାଏ । ଏସବୁ ଘଟଣା ଗୋଟେ ରହସ୍ୟମୟ ସ୍ୱପ୍ନପରି ମୋତେ ଲାଗିଲା । ଆଉ କାଳ ବିଳମ୍ବ ନକରି ଆମେ ଦୁଇବନ୍ଧୁ ଚଟାପଟ ପାହାଡ଼ ତଳକୁ ଓହ୍ଲାଇ ଆସିଲୁ । ସାଙ୍ଗମାନଙ୍କୁ ଡାକି ଘଟଣାଟି ସମ୍ପର୍କରେ କହିଲୁ । ସବୁ ଶୁଣିବା ପରେ ସେମାନେ କ'ଣ କହିଲେ ଜାଣ ... । ତୁମେ ଦୁହେଁ ପାହାଡ଼ ଉପରେ ଶୋଇ ଶୋଇ ସ୍ୱପ୍ନ ଦେଖୁଥିଲ । ଏ ଘଟଣା କେବଳ ସ୍ୱପ୍ନରେହିଁ ସମ୍ଭବ ।

ସତରେ ପିଲାମାନେ, ତୁମେମାନେ ହିଁ କୁହ, ଆମେ କ'ଣ ସ୍ୱପ୍ନ ଦେଖିଥିଲୁ ନା ଏଥିରେ କିଛି ସତ୍ୟତା ଅଛି ?



# ଲାଇଗର୍ ସଫାରୀ

ପିଲାମାନେ, ତୁମେ ଯଦି କେବେ 'ନନ୍ଦନକାନନ' ଯାଇଥିବ, 'ସିଂହ ସଫାରୀ' ନିଶ୍ଚୟ ଦେଖିଥିବ । ଆଜିକାଲି ଅଧିକାଂଶ ଚିଡ଼ିଆଖାନାରେ ସିଂହ ଏବଂ ବାଘ ସଫାରୀର ବ୍ୟବସ୍ଥା ଅଛି । ତୁମେମାନେ ଦେଖିଥାଇପାର; କିନ୍ତୁ 'ଲାଇଗର୍ ସଫାରୀ' ଦେଖିଛ.... ? ନା, ଦେଖିନଥିବ । ମୁଁ ଦେଖିଛି ! ସେ ସମ୍ପର୍କରେ ଗୋଟେ ଅଦ୍ଭୁତ ଏବଂ କଉତୁକିଆ କାହାଣୀ କହୁଛି, ଶୁଣ ।

ଏଇ କିଛି ଦିନ ତଳର କଥା । ଆମ ଶ୍ରେଣୀର ଆମେ ଦଳେ ପିଲା 'ନନ୍ଦନକାନନ' ବୁଲିଯିବାକୁ ସ୍ଥିର କଲୁ । ଆମେ ଥିଲୁ ବାରଜଣ ପୁଅ, ଚାରିଜଣ ଝିଅ ପିଲା । ଜଣେ ସାର୍ ଆମକୁ ନେଇ ବୁଲାଇ ଆଣିବା ଦାୟିତ୍ୱ ନେଲେ । 'ନନ୍ଦନକାନନ' ଯିବାକୁ ହେଲେ ଟ୍ରେନ୍‌ରେ ଯାଇ ଆମକୁ ବାରଙ୍ଗ ଷ୍ଟେସନ୍‌ରେ ଓହ୍ଲାଇବାକୁ ପଡ଼େ । ପୂର୍ବ ଯୋଜନା ଅନୁସାରେ ଆମେ ଭୋର୍ ସାଢ଼େ ୪ଟାରେ ତାଳଚେର ଷ୍ଟେସନ୍‌ରୁ ଟ୍ରେନ୍ ଧରିଲୁ । ସାର୍ ଆମ ସମସ୍ତଙ୍କ ପାଇଁ ଟିକଟ କରି ଆଣିଥାନ୍ତି । ଟ୍ରେନ୍‌ରେ ବସିବା ମାତ୍ରେ ଢୁଳେଇବା ମୋର ଗୋଟେ ବଦଭ୍ୟାସ । ମୋ ଢୁଳେଇବା ଦେଖି ସାର୍ କହିଲେ, ''ସ୍ବୁର, ଯଦି ନିଦ ଲାଗୁଛି, ଉପର ବର୍ଥକୁ ଉଠି ଶୋଇଯାଅ । ବାରଙ୍ଗ ଷ୍ଟେସନ୍ ପାଖେଇଲେ ମୁଁ ଉଠେଇଦେବି ।''

ମୁଁ ତ ସେ'ୟା ଚାହୁଁଥିଲି । ଚଟାପଟ ଉପରକୁ ଉଠି ନିଶ୍ଚିନ୍ତରେ ଗଡ଼ି ପଡ଼ିଲି । ପଡୁ ପଡୁ ପାହାଡ଼ ପରି ମାଡ଼ି ଆସିଲା ନିଦ । ତା'ପରେ କେତେ ସମୟ କଟିଛି, କେଉଁ କେଉଁ ଷ୍ଟେସନ୍ ଅତିକ୍ରମ କରି ଟ୍ରେନ କେତେଦୂର ଗଲାଣି, ସେ ସବୁ ମୁଁ ଆଉ ଜାଣିପାରିନି । ହଠାତ୍ ଗୋଟେ ପ୍ରଚଣ୍ଡ ଝଟ୍‌କାରେ ମୋ ନିଦ ଯେତେବେଳେ ଭାଙ୍ଗେ, ଦେଖିଲି, ଟ୍ରେନ୍ କୌଣସି ଗୋଟେ ଷ୍ଟେସନ୍‌ରେ ଠିଆ ହେଇଛି । ମୁଁ ଅଳସଭାଙ୍ଗି ଉଠି ବସିଲି, ଦେଖେତ ମୋ ସାଙ୍ଗସାଥୀମାନେ କେହି ଦେଖାଯାଉ ନାହାନ୍ତି । ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଭାବିଲି, ସେମାନେ ଆରପଟ କେବିନ୍‌ରେ ବସିଥାଇପାରନ୍ତି । ତଳକୁ ଓହ୍ଲାଇ ବଗିର ଏମୁଣ୍ଡରୁ ସେମୁଣ୍ଡ ଯାଏଁ ଖୋଜି ପକାଇଲି । କିନ୍ତୁ ନା ସାର୍, ନା ପିଲାମାନେ, କେହି ଜଣେ ବି ସେ ବଗିଭିତରେ

ନଥିଲେ । ଭୟ ଓ ବିସ୍ମୟରେ ମୋ ଛାତି ଥରିବାକୁ ଲାଗିଲା । ''ଭୁଲ୍‌ରେ ମୋତେ ନ ଉଠାଇ ସେମାନେ କ'ଣ ବାରଙ୍ଗ ଷ୍ଟେସନ୍‌ରେ ଓହ୍ଲାଇ ପଡ଼ିଲେ... ? ତା' ହେଲେ ଏଇଟା କେଉଁ ଷ୍ଟେସନ୍ ... ?'' ଏହା ଭାବି ମୁଁ ବାହରକୁ ଦେଖେତ, ଲେଖା ହେଇଛି 'ବାରଙ୍ଗ' ! ମୁଁ ଆଉ ଆଗପଛ ଚିନ୍ତା ନକରି ସେଠି ଓହ୍ଲାଇ ପଡ଼ିଲି । ପୁଣି ଷ୍ଟେସନ୍ ସାରା ଖୋଜିଲି, କାହାର ପତ୍ତା ପାଇଲିନି । ତା'ପରେ ଭାବିଲି, କାଳେ ସେମାନେ ଷ୍ଟେସନ୍ ବାହାରକୁ ଚାଲିଯାଇଥିବେ । ଷ୍ଟେସନ ବାହାରକୁ ଯିବାପାଇଁ ଗଳି ପରି ଗୋଟେ ସଙ୍କୀର୍ଣ୍ଣ ବାଟଥିଲା । ଯାତ୍ରୀମାନେ ଜଣ ଜଣ କରି ତା'ଭିତର ଦେଇ ବାହାରକୁ ଯାଉଥିଲେ । ମୁଁ ମଧ ତା'ଭିତରେ ପଶିଲି । ଯେମିତି ପଶିଛି ଦୁଇପଟୁ ଦୁଇଟା କାଚଦୁଆର ଘଁ ଘାଁ ହେଇ ବନ୍ଦ ହୋଇଗଲା । ଅକଲ ମୋର ଗୁଡୁମ୍ । ଆଖି ପିଛୁଳାକେ ମୁଁ କାଚଘର ଭିତରେ ବନ୍ଦୀ ହୋଇଗଲି, କରିବି କ'ଣ ଭାବୁଛି । ସାମନାରେ କମ୍ପ୍ୟୁଟର ମନିଟର ପରି ଗୋଟେ ଉଜ୍ଜ୍ୱଳ ପରଦା ଝଲମଲ୍ କଲା । ତା' ଉପରେ ଇଂରାଜୀରେ ଲେଖା ହେଲା, ''ଆପଣ କ'ଣ ଟିକଟ କରି ନାହାନ୍ତି ?''

ମୁଁ ତ ପୂରା ତାଜୁବ୍ ! ଟିକଟ ଯାଞ୍ଚ କରିବା ପ୍ରଣାଳୀ ଏଡ଼େ ଉନ୍ନତ କେବେଠୁ ହେଲାଣି ମୁଁ ବୁଝିପାରିଲିନି । ହେଲେ ମୁଁ କରନ୍ତି ବା କ'ଣ... ? ମୋ ଟିକଟ ତ ସାର୍‌ଙ୍କ ପାଖରେ । ନିରୁପାୟ ଭାବେ ମୁଁ ଚୁପ୍‌ଚାପ୍ ଠିଆହୋଇ ରହିଲି । ଦୁଇସେକେଣ୍ଡ ପରେ



ସେ ଲେଖା ଲିଭିଗଲା ପୁଣି ନୂଆ ଲେଖା ବାହାରିଲା, ''ଆମେ ଦୁଃଖିତ..., ଅନୁସନ୍ଧାନରୁ ଜଣାଗଲା, ଶହେ ସତର ବର୍ଷ ପୂର୍ବେ ଆପଣ ତାଳଚେର ଷ୍ଟେସନ୍‌ରୁ ଟିକଟ୍ କରିଥିଲେ ।

ଶତାଧିକ ବର୍ଷ ତଳର ଟିକଟ୍ ଯଦିଓ ମୂଲ୍ୟହୀନ; ତା' ସତ୍ତ୍ୱେ ଜଣେ ବରିଷ୍ଠ ନାଗରିକ ହିସାବରେ ଆପଣଙ୍କୁ ଛାଡ଼ିଦିଆ ଯାଉଛି ।'' ତା'ପରେ ସଙ୍ଗେ ସଙ୍ଗେ ସାମନା ଦୁଆରଟା ଖୋଲିଗଲା । ଏକା ଖେପାକେ ମୁଁ ବାହାରକୁ ଚାଲିଆସିଲି । ଦୀର୍ଘ ନିଃଶ୍ୱାସ ଛାଡ଼ି ଭାବିବାକୁ ଲାଗିଲି, କି ଆଶ୍ଚର୍ଯ୍ୟ... ! ଏସବୁ ଲେଖାର ରହସ୍ୟ କ'ଣ ? ଟିକଟ ତ ଆଜି ସକାଳେ କଟା ହୋଇଥିଲା, ଶହେ ସତରବର୍ଷ ତଳେ ବୋଲି କାହିଁକି ଲେଖାହେଲା ? ମୁଁ ପୁଣି ଜଣେ ବରିଷ୍ଠ ନାଗରିକ କେମିତି ହେଲି ?

ମନେ ମନେ ମୁଁ ଏମିତି ଭାବୁଛି, ହଠାତ୍ ଆକାଶରେ ଦେଖିବାକୁ ପାଇଲି ଗୋଟେ ଅଦ୍ଭୁତ ଉଡ଼ନ୍ତାଯାନ । ସେଇଟା ଦିଶୁଥିଲା ଗୋଟେ ଖୁବ୍ ବଡ଼ ଘୂରନ୍ତା 'ନଟୁ' ପରି । କଣ ସେ ବସ୍ତୁ ଭାବି ମୁଁ ତଟସ୍ଥ ହୋଇ ଅନାଇ ରହିଥାଏ, ଯାନଟା ଘୂରିଘୂରିକା ତଳକୁ ଓହ୍ଲାଇଲା । ମୋଠାରୁ ପ୍ରାୟ ୧୦ ମିଟର ଦୂରରେ ଘୂର୍ଣ୍ଣନ ବନ୍ଦ ହେବାପରେ ତା'ର ଗୋଟେ ଦୁଆର ଖୋଲିଗଲା ଏବଂ ବିଚିତ୍ର ପୋଷାକ ପିନ୍ଧିଥିବା ଜଣେ ଲୋକ ତା'ଭିତରୁ ଓହ୍ଲାଇଲେ । ମୋ ପାଖକୁ ଆସିଲେ । ମୋ ସହିତ ହ୍ୟାଣ୍ଡସେକ କରି ପଚାରିଲେ, ''ଆପଣ ନନ୍ଦନକାନନ ଯିବେ ତ ? ଆସନ୍ତୁ ମୋ ସହିତ ।''

''– କିନ୍ତୁ ଆପଣ... ଆପଣ କିଏ ?'' ବିସ୍ମୟରେ ପଚାରିଲି ମୁଁ । ସେ କହିଲେ, ''ମୋ ନା 'ସି-୨' । 'ନନ୍ଦନକାନନ' ବୁଲିଆସୁଥିବା ଯାତ୍ରୀମାନଙ୍କୁ ଏଠୁ ପାଛୋଟି ନେବା ମୋ କାମ ।'' ଏତିକି କହି ସେ ମୋତେ ଗୋଟେ ପ୍ରକାର ଟାଣିନେଇ ଯାନ ଭିତରେ ବସାଇଦେଲେ । ସେ ମଧ୍ୟ ବସିଲେ । ତାପରେ ସେ କ'ଣ କଲେ କେଜାଣି.... ସଙ୍ଗେ ସଙ୍ଗେ ନଟୁ-ଯାନଟା ପୁଣି ଆକାଶରେ ଉଡ଼ିବାକୁ ଲାଗିଲା । ମୁଁ ଭୟ ଓ ବିସ୍ମୟରେ ଶିହରି ଉଠିଲି । ଭାବିଲି, ମୋତେ ଏ ଲୋକ ଏଠୁ ଅନ୍ୟ କୌଣସି ଗ୍ରହକୁ ଚୋରାଇ ନେଉନି ତ ?

ଲୋକଟି ମୋ ଆଡ଼କୁ ଚାହିଁ ଅଳ୍ପ ହସିଲେ । ସାହସ ସଞ୍ଚୟ କରି ମୁଁ ପଚାରିଲି, ''ଏ ତ ବଡ଼ ଅଦ୍ଭୁତ ବ୍ୟୋମଯାନ ! ଏଇଟା ପୁଣି ଉଦ୍ଭାବନ ହେଲା କେବେ ?''

ସେ ଉତ୍ତର ଦେଲେ, ''ପ୍ରକୃତରେ 'ଫ୍ଲାଇଂକାର୍'ର ଯୁଗ ଆରମ୍ଭ ହେଇଥିଲା ୨୦୩୫ ମସିହାରେ । ଏଇଟା ହେଉଛି ଏ ଯୁଗର ଅତ୍ୟାଧୁନିକ ଉଡ଼ନ୍ତା ଯାନ 'ଏରୋକେନ୍' । ଆପଣ ତ ୨୦୦୩ ମସିହାର ମଣିଷ । ଏ ସମ୍ପର୍କରେ ଜାଣିବେ କେମିତି ?''

ତାଙ୍କ କଥା ଶୁଣି ସତେ ଯେମିତି ମୁଁ ଆକାଶରୁ ଖସି ପଡ଼ିଲା । ପଚାରିଲି, ''ଏଇଟା ତା'ହେଲେ କେଉଁ ମସିହା ଚାଲିଛି ?'' ସେ କହିଲେ, ''ଆଜି ଦୁଇହଜାର ଶହେ କୋଡ଼ିଏ ମସିହା ଜୁନ୍ ସତର ତାରିଖ ।''

କି ଅସମ୍ଭବ କଥା ! ମୁଁ ତ ଦୁଇହଜାର ତିନି ମସିହା ଜାନୁଆରୀ ଏଗାର ତାରିଖରେ ଘରୁ ବାହାରିଲି... ଦୁଇହଜାର ଶହେ କୋଡ଼ିଏ ମସିହା ହେଲା କେମିତି ? ଏସବୁ ଘଟଣା ସ୍ୱପ୍ନ ନା ସତ ! ଏହା ଭାବିବାବେଳକୁ ମୋ ମୁଣ୍ଡ ଆଉ କିଛି କାମ କଲାନି । କାନମୁଣ୍ଡା ଭାଁ ଭାଁ ହେବାକୁ ଲାଗିଲା ।

ୟା' ଭିତରେ ଆମ ଯାନ ତଳକୁ ଓହ୍ଲାଇସାରିଥାଏ । ମନକୁ ଦୁଆର ଖୋଲିଗଲା । ମୁଁ ଯେମିତି ଓହ୍ଲେଇଛି ଚାରିଜଣ ଲୋକ ମୋତେ ଆସି ଘେରିଗଲେ । ଜଣ ଜଣ କରି ମୋ' ସହିତ ହ୍ୟାଣ୍ଡସେକ୍ କରିଚାଲିଲେ । ଭକୁଆଙ୍କ ପରି ମୁଁ ଖାଲି ଅନେଇ ରହିଥାଏ, କିନ୍ତୁ ଆଖିକୁ ବିଶ୍ୱାସ କରିପାରୁ ନଥାଏ ।

ପିଲେ, ଏକା ଚେହେରାର ମଣିଷ ଖୁବ୍ ହେଲେ ତୁମେ ଦୁଇଜଣଙ୍କୁ ଦେଖିଥିବ । ବିଶ୍ୱାସ କର । ମୋ ସାମନାରେ ସେମିତିକା ପାଞ୍ଚଜଣ ଠିଆ ହୋଇଥିଲେ । ମୋତେ ଯିଏ ଉଡ଼ନ୍ତାଯାନରେ ବସାଇ ଆଣିଥିଲେ, ତାଙ୍କ ଚେହେରା ଏବଂ ଏ ଚାରିଜଣଙ୍କ ଚେହେରା, ଅବିକଳ ଏକାପରି ଦେଖାଯାଉଥିଲା । ମନେ ହେଉଥିଲା ଜଣେ ଲୋକର ପାଞ୍ଚଟା ପ୍ରତିବିମ୍ବ ।

ମୁଁ ଘଡ଼ିଏ କାଳ ବଲବଲ କରି ଅନେଇବା ପରେ ପଚାରିଲି, ''ଆପଣମାନେ କ'ଣ ପାଞ୍ଚ ଯାଆଁଳାଭାଇ ?''

ତା ଭିତରୁ ଜଣେ ଅଳ୍ପ ହସି କହିଲେ, ''ନା, ଆମେ ଏ ଯୁଗରେ କ୍ଲୋନମ୍ୟାନ୍ !'' 'ନନ୍ଦନକାନନ' କମ୍ପାନୀର ମାଲିକ ଏହାର ପରିଚାଳନା ସୁବିଧା ପାଇଁ ତାଙ୍କ ଶରୀରର ଜୀବକୋଷରୁ ଆମ ପାଞ୍ଚ 'କ୍ଲୋନ୍-ଭାଇ'ଙ୍କୁ ସୃଷ୍ଟି କରିଛନ୍ତି । ଆପଣଙ୍କର ଏଠି କିଛି ଅସୁବିଧା ହେବନି । ଆପଣ ଆମ 'ସି-୨'ଙ୍କ ସହିତ ଯାଇ ବୁଲାବୁଲି କରି ଆସନ୍ତୁ, ଆମେ ଆସୁଛୁ । ଏତିକି କହି ସେମାନେ ଯେଝା ରାସ୍ତାରେ ଚାଲିଗଲେ । ସି-୨ଙ୍କ ପଛେ ପଛେ ମୁଁ ଚାଲିଲି ।

ପ୍ରଥମେ ସି-୨ ମୋତେ ନେଇଗଲେ ଗୋଟେ ଛୋଟ ଜଳାଶୟ ପାଖକୁ । ପାଣି ଭିତରୁ କୂଳକୁ ଆସି କେତୋଟି ବିଚିତ୍ରଜୀବ ଖରା ପୋଉଥିଲେ । ମୁଁ ଭାବିଲି, ସେଗୁଡ଼ାକ ନିଶ୍ଚୟ କୁମ୍ଭୀର ହେଇଥିବ । କିନ୍ତୁ ସେ ଜୀବଗୁଡ଼ିକର ଶରୀର ଗଠନ ଥିଲା ବଡ଼ ଅଦ୍ଭୁତ । ସାମନା ଭାଗଟା ତ କୁମ୍ଭୀର ପରି, ବିଶାଳପାଟି, ତୀକ୍ଷ୍ଣଦାନ୍ତ ଏବଂ ଆଗଗୋଡ଼; କିନ୍ତୁ ସାମନା ଭାଗରେ ହିଁ ଦୁଇଟା, ହେଲେ ପଛଟା ଅବିକଳ ମାଛ ପରି । ଲାଞ୍ଜ,ଡେଣା ଆଉ କାତିଯୁକ୍ତ । ସେ ଜୀବ ଦେଖି ମୁଁ ପୂରା ଭେଳେକା । ସି-୨ କହିଲେ, ''ଏ ହେଉଚି ଆମ ଜୀବବିଜ୍ଞାନୀମାନଙ୍କର କରାମତି । ଦୁଇଟି ଭିନ୍ନ ପ୍ରାଣୀର ଜୀବକୋଷରୁ ମିଶ୍ରଜାତୀୟ ପ୍ରାଣୀ ସୃଷ୍ଟି କରିବାରେ ଏମାନେ ପାରଙ୍ଗମ । ଆମେ ଏ ଜୀବଟାକୁ କହୁ 'କ୍ରୋକୋଫିସ୍' ।''

ତା'ପରେ ସେ ଅଳ୍ପ ଦୂରରେ ଘାସ ଚରୁଥିବା ଗୋଟେ ପ୍ରାଣୀକୁ ଦେଖାଇ କହିଲେ, "ଦେଖନ୍ତୁ, ଗୋରୁ ଏବଂ ଘୋଡ଼ାର ସମ୍ମିଶ୍ରଣ କୋଷରୁ ସେ ବିଚିତ୍ର ପ୍ରାଣୀକୁ ସୃଷ୍ଟି କରାଯାଇଛି । ନାଁ' ତାର ବୁଲର୍ସ ।" ବୁଲର୍ସ ନାମକ ସେ ବିଚିତ୍ର ପ୍ରାଣୀଟାକୁ ଆଉ ଟିକିଏ ପାଖକୁ ଯାଇ ମୁଁ ଦେଖିଲି । ଘୋଡ଼ାର ଶିଙ୍ଗ ଥିବା କଥା କହିଲେ, ଆମେ କଥାଟାକୁ ହସରେ ଉଡ଼େଇଦେଉ କିନ୍ତୁ ଯେଉଁ ଘୋଡ଼ାଟିକୁ ମୁଁ ଦେଖୁଥିଲି ତା'ର ଥିଲା ଦୁଇଟା ମୁନିଆଁ ଶିଙ୍ଗ ଏବଂ ବେଳେ ବେଳେ ସେ ହମ୍ବା ହମ୍ବା ରଡ଼ୁଥିଲା । ବୁଲର୍ସ ଦେଖାଇବା ପରେ ସେ ମୋତେ ଗୋଟେ ବଡ଼ ଛେଳି ଗୁହାଳ ପାଖକୁ ନେଇଗଲେ । ତାରଜାଲିଘେରା ଗୁହାଳ ଭିତରେ ଆଠ ଦଶଟା ବଡ଼ଧରଣର ଛେଳି ବନ୍ଧା ହୋଇଥିଲେ । ଛେଳି ହେଲେ ମଧ୍ୟ ସେମାନଙ୍କ ଶାରୀରିକ ଗଠନ ଟିକିଏ ଅଲଗା ଲାଗୁଥିଲା । ଲାଞ୍ଜଗୁଡ଼ାକ କୁକୁରଲାଞ୍ଜ ପରି ମୋଡ଼ି ହୋଇ ରହିଥିଲା । ମୋତେ ଦେଖିବା



ମାତ୍ରେ ଛେଳିଗୁଡ଼ାକ ଡାହାଳ କୁକୁର ପରି ଭୁକିବାକୁ ଲାଗିଲେ । ମୁଁ ତଟସ୍ଥ...! ସି-୨କୁ ମୁଁ ପଚାରିଲି ଏ ଗୁଡ଼ାକ କ'ଣ ଅଧାଛେଳି ଅଧାକୁକୁର ?

ହଁ... ଆମେ ଏଗୁଡ଼ାକୁ ଗୋଗ୍ କହୁଁ । ଏମାନେ କୁକୁର ପରି ଚୋର ଧରନ୍ତି ଏବଂ ଛେଳି ପରି ଦୁଧ ବି ଦିଅନ୍ତି । ଯେ ଆମ ପାଇଁ ବଡ଼ ଉପକାରୀ ଜୀବ ।

ତା'ପରେ ସେ ମୋତେ ଗୋଟେ କେବିନ୍ ଭିତରକୁ ନେଇଗଲେ । ନୀଳରଙ୍ଗର ଦୁଇ ହଳ ପୋଷାକ ଆଣିଲେ । ନିଜେ ହଳେ ପିନ୍ଧି ମୋତେ ପିନ୍ଧିବାକୁ ହଳେ ଦେଲେ । ମୁଁ ପଚାରିଲି, ଏ କ'ଣ ହେବ ? ସେ କହିଲେ, ''ଦେଖନ୍ତୁ, ଏ ହେଉଛି ଇଲେକ୍ଟ୍ରୋ ସୁଟ । ଆମେ ଏବେ ଲାଇଗର ସଫାରୀ ଦେଖିବାକୁ ଯିବା ।'' 'କଣ କହିଲେ ଟାଇଗର ସଫାରୀ... ?' ମୁଁ ଠିକ୍ ଭାବେ ଶୁଣି ନପାରି କଥାଟାକୁ ଦୋହରାଇଲି । ''ନା ନା 'ଲାଇଗର' ! ଲାୟନ ଏବଂ ଟାଇଗରର ମିଶ୍ରିତ ଜୀବକୋଷକୁ ନେଇ ଯେଉଁ ଅଦ୍ଭୁତ ହିଂସ୍ରଜୀବ ସୃଷ୍ଟି କରାଯାଇଛି, ତାକୁ ଆମେ ଲାଇଗର କହୁ । ସେମାନଙ୍କୁ ଦେଖିବାପାଇଁ ଯେଉଁ ସଫାରୀର ବ୍ୟବସ୍ଥା କରାଯାଇଛି, ଆମେ ଏବେ ତା' ଭିତରକୁ ଯିବା । ଇଲେକ୍ଟ୍ରୋ ସୁଟ ଦେହରେ ଥିଲେ ସେମାନେ ଆମକୁ ଆକ୍ରମଣ କରିପାରିବେନି । ଦେଖନ୍ତୁ, ଭୟ ଦେଖାଇବା ପାଇଁ ସେମାନେ ଆପଣଙ୍କ ଉପରକୁ ଲମ୍ଫ ଦେବା ଅଭିନୟ କରିପାରନ୍ତି, ଆପଣ କିନ୍ତୁ ଆଦୌ ଡରିବେନି ।''

ମୁଁ ଛାତିକୁ ଦୃଢ଼ କରି ସି-୨ଙ୍କ ପଛେ ପଛେ ପାଚେରିଘେରା ପଡିଆ ଭିତରେ ପଶିଲି । ଆମେ ଆଠ ଦଶ ମିଟର ଯାଇନ୍ଥୁ କି ନାହିଁ ଆଗରେ ଆସି ଠିଆ ହେଇଗଲା ଗୋଟେ ଭୀଷଣକାୟ ପ୍ରାଣୀ । ସିଂହ ପରି ବିଶାଳ କେଶରଯୁକ୍ତ ମୁଣ୍ଡ । ଏଣେ ମହାବଳ ବାଘ ପରି ଦେହରେ ପଟାପଟା ଦାଗ । ତାକୁ ଦେଖି ମୁଁ ବରଡ଼ା ପତ୍ର ପରି ଥରିବାକୁ ଲାଗିଲି । ଲାଇଗର ଏବଂ ଆମ ମଧ୍ୟରେ ମାତ୍ର ଚାରିପାଞ୍ଚ ମିଟର ବ୍ୟବଧାନ । ହଠାତ୍ ଲାଇଗର ତା ବିଶାଳ ପାଟି ଆଁକରି ମୋ ଉପରକୁ ଲମ୍ଫ ମାରିବାକୁ ଉଦ୍ୟମ କଲା । ମୁଁ ଭୟରେ ଚିତ୍କାର କଲି ଲାଇଗର... ଲାଇଗର... ଲାଇଗର... !

କିଏ ମୋତେ ଖୁବ୍ ଜୋର୍‌ରେ ହଲାଇ ଦେବାରୁ ମୋ ନିଦ ଭାଙ୍ଗିଗଲା । ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ମୁଁ ସ୍ୱପ୍ନ ଦେଖୁଥିଲି ବୋଲି ଆଦୌ ବିଶ୍ୱାସ କରି ପାରିଲିନି । ମୋ ସ୍ୱପ୍ନ ଅନୁଭୂତି ମୁଁ ଯେତେବେଳେ ମୋ' ସାଙ୍ଗସାଥୀମାନଙ୍କୁ କହିଲି, ସେମାନେ ବିସ୍ମିତ ହୋଇଗଲେ । ସାର୍ ଶୁଣିବା ପରେ କହିଲେ, ''ସୁର ଯେଉଁ ସ୍ୱପ୍ନ ଦେଖିଲା, ତାହା ଯେ ଆଗାମୀ ଯୁଗରେ ସମ୍ଭବ ନ ହେବ ତାହା କିଏ କହିବ ?'' ''ବିଜ୍ଞାନର କରାମତି ଯୋଗୁଁ- କଲମୀ ମଣିଷ 'କ୍ଲୋନ୍ ମ୍ୟାନ୍' ଯେପରି ସମ୍ଭବ ସେମିତି ଅଙ୍ଗ ପ୍ରତ୍ୟାରୋପଣ ଦ୍ୱାରା ମିଶ୍ରଜୀବର ସୃଷ୍ଟି ସମ୍ଭବ !''



# ଚକୋଲେଟ୍‌ର ଚମତ୍କାର !

ପିଲାମାନେ, ଚକୋଲେଟ୍ ଖାଇବାକୁ ଆମ ସମସ୍ତଙ୍କୁ ଭଲ ଲାଗେ । ତୁମ ଭିତରୁ ଅନେକେ ତ ରୀତମତ ଚକୋଲେଟ୍, ଟଫି, ଲଜେନ୍ସ ଇତ୍ୟାଦି ଖାଉଥିବ । ହେଲେ ମନେ ରଖିଥାଅ ପିଲେ, କୌଣସି ଅଜଣା ଅଚିହ୍ନା ଲୋକ ହାତରୁ କେବେ ବି କିଛି ଖାଇବନି । ଥରେ ଏମିତି ଚକୋଲେଟ୍‌ଟିଏ ଖାଇ ମୁଁ ଯେଉଁ ଅଦ୍ଭୁତ ପରିସ୍ଥିତିରେ ପଡ଼ିଥିଲି, ସେକଥା କହିଲେ କେହି ବିଶ୍ୱାସ କରିବନି । ତଥାପି ତୁମମାନଙ୍କୁ ସତର୍କ କରିଦେବାପାଇଁ କହୁଛି, ଶୁଣ ।

ପ୍ରାୟ ଚାରିବର୍ଷ ତଳର ଘଟଣା । ସେ ବର୍ଷ ମୋର ଅଷ୍ଟମ ଶ୍ରେଣୀ । ମୋ ବଡ଼ଭାଇ ବାଙ୍ଗାଲୋରରେ ଚାକିରି କରନ୍ତି । ଥରେ ମୁଁ ତାଙ୍କ ସହିତ ବାଙ୍ଗାଲୋର ଯାଇଥିଲି । ସେ ଆଖପାଖର କେତେକ ଦର୍ଶନୀୟ ସ୍ଥାନ ଭାଇଙ୍କ ସାଙ୍ଗରେ ବୁଲାବୁଲି କରି ଆସିବି ବୋଲି ଭାବିଥିଲି । ହେଲେ ମୋ ଭାଗ୍ୟ ଖରାପ । ସେଠାରେ ପହଞ୍ଚୁ ପହଞ୍ଚୁ ଭାଇଙ୍କର ଅଚାନକ ଗୋଟେ 'ଟୁର୍' ପଡ଼ିଗଲା । କମ୍ପାନୀ କାମରେ ତାଙ୍କୁ ଚାରିପାଞ୍ଚ ଦିନ ପାଇଁ ଚେନ୍ନାଇ ଯିବାକୁ ପଡ଼ିଲା । କ୍ୱାର୍ଟରରେ ରହିଲି ମୁଁ ଏକା । ନୂଆ ଜାଗା, ସମସ୍ତେ ଅଚିହ୍ନା, ଏକା ଏକା ଘରଟା ଭିତରେ ମୁଁ କେତେ ଅବା ବସି ରହିଥାନ୍ତି । ପରଦିନ ସକାଳୁ ମୁଁ ବୁଲି ବାହାରି ପଡ଼ିଲି ।

ବାଙ୍ଗାଲୋର ବଡ଼ ସୁନ୍ଦର ସହର । ଯେଉଁ ଆଡ଼କୁ ଦେଖ, ଧାଡ଼ି ଧାଡ଼ି ଫୁଲଗଛ । ସବୁଜ ଉଦ୍ୟାନ । ପରିଷ୍କାର ରାସ୍ତାଘାଟ । ସୁନ୍ଦର ସୁନ୍ଦର କୋଠାବାଡ଼ି । ଏସବୁ ଦୃଶ୍ୟ ମୋତେ ଭାରି ଭଲ ଲାଗୁଥାଏ । ଏମିତି ଦେଖି ଯାଉଯାଉ ମୁଁ ଅନେକ ଦୂର ଚାଲିଗଲି ।

ହଠାତ୍ ଗୋଟେ ସ୍ଥାନରେ ମୋ ପାଦ ଦି'ଟା ଅଟକିଗଲା । ଗୋଟେ ମନମତାଣିଆ ଚକୋଲେଟ୍ ବାସନା ନାକରେ ଆସି ବାଜିଲା । ବାଃ... ଏଡ଼େ ଲୋଭନୀୟ ବାସ୍ନା ! ମନେହେଲା ସତେ ଯେମିତି ଆଖପାଖରେ କେଉଁଠି ଚକୋଲେଟ୍‌ର ପାହାଡ଼ଟାଏ ଅଛି । ଟିକେ ନାକେଇବାରୁ ଜାଣି ପାରିଲି, ବାସନାଟା ରାସ୍ତାକଡ଼ର ଗୋଟେ କୋଠାଘର ଭିତରୁ ଆସୁଛି । ମନେ ମନେ ଭାବିଲି, କୋଠାଟା ନିଶ୍ଚୟ ଚକୋଲେଟ୍ କାରଖାନା ହେଇଥିବ । ଜୀବନରେ ମୁଁ ଅନେକ କିସମର ଚକୋଲେଟ୍ ତ ଖାଇଛି; ହେଲେ ସେ ଗୁଡ଼ାକ କାରଖାନାରେ

କେମିତି ତିଆରି ହୁଏ, ଦେଖିନି । ଭିତରକୁ ଯାଇ ଟିକେ ବୁଲି ଆସିଲେ କେମିତି ହୁଅନ୍ତା... ? ଏମିତି ଭାବି ମୁଁ ଦୋଦୋପାଞ୍ଚ ହେଇ ଠିଆ ହେଇଛି, ଦେଖିଲି, ସେ କୋଠାଘରର ଝରକା ପାଖରେ ଠିଆ ହେଇ କିଏ ଜଣେ ଦାଢ଼ିଆ ଲୋକ ମୋତେ ହାତଠାରି ଡାକୁଛନ୍ତି । ତାଙ୍କ ଇସାରା ପାଇ ମୋ ସାହସ ଟିକେ ବଢ଼ିଗଲା । ମୁଁ କବାଟ ଠେଲି ସେ ଘର ଭିତରେ ପଶିଲି ।

ଭିତରେ ଯାହା ଦେଖିଲି, ଆଶ୍ଚର୍ଯ୍ୟ ଲାଗିଲା । ସେଇଟା ଚକୋଲେଟ୍ କାରଖାନା ନଥିଲା, ଥିଲା ଗୋଟେ ଛୋଟ ବିଜ୍ଞାନାଗାର । ବିଭିନ୍ନ ପ୍ରକାରର ବିଜ୍ଞାନ ଉପକରଣ, ଯନ୍ତ୍ରପାତି, କାଚଜାର, ପରୀକ୍ଷାନଳୀ ଇତ୍ୟାଦି ଘର ଭିତରେ ଇତସ୍ତତଃ ଭାବେ ରହିଥିଲା । କୋଠରି ମଝିରେ ପଡ଼ିଥିଲା ବଡ଼ ଟେବୁଲଟିଏ । ତା' ଉପରେ ଗୁଡ଼ାଏ ମୋଟା ମୋଟା ବହି । ଗୋଟେ ସ୍ପିରିଟ୍ ଲ୍ୟାମ୍ପ୍ ଉପରେ, ପରୀକ୍ଷା ନଳୀରେ ଟକ୍‌ମକ୍ ହେଇ ଫୁଟୁଥାଏ କିଛି ତରଳ ରସାୟନ । ଚକୋଲେଟ୍ ବାସନାଟା ସେ ପରୀକ୍ଷା ନଳୀ ଭିତରୁ ହିଁ ବାହାରୁଛି ବୋଲି ମୁଁ ଜାଣିପାରିଲି ।

ମୁଁ ଆଶ୍ଚର୍ଯ୍ୟରେ ଝରକା ପାଖରେ ଠିଆ ହେଇଥିବା ଲୋକଟା ଆଡ଼କୁ ଚାହିଁଲି । ସେ ପିନ୍ଧିଥାନ୍ତି ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିବା ଗୋଟେ ଧଳା କୋଟ୍ । ମୁହଁରେ ଗୋଛାଏ ଧଳା ଦାଢ଼ି । ଲମ୍ବା ଚୁଳ । ହସହସ ମୁହଁରେ ସେ ମୋ ପାଖକୁ ଆସିଲେ । ମୋ ନାଁ, ଗାଁ, ଠିକଣା, କ'ଣ ପଢୁଛ ଇତ୍ୟାଦି ଇଂରାଜୀରେ ପଚାରିଲେ । ମୁଁ ତ ସେତେବେଳକୁ ଇଂରାଜୀ ଭଲରୂପେ କହିପାରୁନଥାଏ । ତଥାପି ତାଙ୍କର ସବୁ ପ୍ରଶ୍ନର ଉତ୍ତର ଠିକେ ଠିକେ ଦେଲି ।

''କ'ଣ ଚକୋଲେଟ୍ ଖାଇବ ?'' କହି ସେ କୋଟ ପକେଟରୁ ଗୋଟେ ଦାମିକା ଚକୋଲେଟ୍ କାଢ଼ି ମୋ ଆଡ଼କୁ ବଢ଼ାଇଲେ । ଚକୋଲେଟ୍ ବାସନାରେ ସେତେବେଳକୁ ମୋ ପାଟିତ ପୂରା ଲାଳେଇ ଯାଇଥାଏ, ଆଉ ଲୋଭ ସମ୍ଭରଣ କରିପାରିଲିନି, ଚକୋଲେଟ୍‌ଟା ତାଙ୍କ ହାତରୁ ଝାମ୍ପି ଆଣି ଟପ୍ କିନା ପାଟିରେ ପୂରାଇଦେଲି ।

ବାସ, ସେତିକି ହିଁ ଥିଲା ମୋର ଭୁଲ୍ । ତା' ପରମୁହୂର୍ତ୍ତରେ ଘଟିଗଲା ଗୋଟେ ଅଲୌକିକ ଘଟଣା । ହଠାତ୍ ମୁଁ ସତେ ଯେମିତି ଗୋଟେ ଗଭୀର କୂଅ ଭିତରେ ଗଳିପଡ଼ିଲି । ଆଖିଖୋଲି ଯାହା ଦେଖିଲି, ବିଶ୍ୱାସ ଲାଗିଲାନି । ସ୍ୱପ୍ନ କି କୁହୁକ କିଛି ବୁଝିପାରିଲିନି । ଆଖି ପିଛୁଳାକେ ମୁଁ ପାଲଟି ଯାଇଥିଲି ଗୋଟେ ଦଶଇଞ୍ଚିଆ ମଣିଷ !

ଦଶଇଞ୍ଚିଆ ମଣିଷ !! ପିଲାମାନେ, ତମେ କେହି କଳ୍ପନା ବି କରି ପାରିବନି, ମୁଁ କେଡ଼ିକି ବକଟେ ହୋଇଯାଇଥିବି । ଭୟ ଓ ବିସ୍ମୟରେ ମୁଁ ଖାଲି ଚିତ୍କାର କରିବାକୁ ଲାଗିଲି ।

ଆଶ୍ଚର୍ଯ୍ୟର କଥା, ମୁଁ ଏଡ଼େ ପାଟିରେ ହାଉଳି ଖାଉଥାଏ ଅଥଚ ଶୁଣାଯାଉଥିଲା ମୂଷାଛୁଆର ଚେଁ... ଚେଁ ଶବ୍ଦ ପରି ।

ମୋତେ ଚକୋଲେଟ୍ ଦେଇଥିବା ଲୋକଟା ଗୋଟେ ବିଶାଳକାୟ ଦାଢ଼ିଆ ଅସୁର ପରି ଦିଶୁଥାଏ । ଟେବୁଲ୍‌ଟା ଦେଖାଯାଉଥିଲା ଗୋଟେ ବିରାଟ ଦିମହଲା ଛାତ ପରି । ମୁଁ ହଠାତ୍ ଛୋଟ ହୋଇଯିବାରୁ, ଖୁସିରେ ସେ ଦାଢ଼ିଆ ଲୋକଟା ୟୁରେକା.... ୟୁରେକା... ଚିତ୍କାର କରି ଘରସାରା ଡେଇଁବାକୁ ଲାଗିଲା । ଘଟଣା କ'ଣ ମୁଁ କିଛି ବୁଝି ନପାରି ଛାନିଆଁ ହେଇ ଅନାଇ ରହିଥାଏ ।

କିଛି ସମୟ ପରେ ଲୋକଟା ଟିକେ ଶାନ୍ତ ପଡ଼ିଲା । ମୋ ପାଖକୁ ଆସିଲା । ନଇଁପଡ଼ି ମୂଷାଛୁଆକୁ ଧରିବା ପରି ସେ ତା' ଦୁଇ ଆଙ୍ଗୁଠିରେ ମୋ ଅଣ୍ଟାକୁ ଧରି ଆସ୍ତେ କରି ଉପରକୁ ଉଠାଇଲା ଏବଂ ଟେବୁଲ୍ ଉପରେ ଠିଆକଲା । ସେତେବେଳକୁ ଭୟରେ ମୋ ରକ୍ତ ପାଣି ଫାଟିଯାଇଥାଏ ।



ଟେବୁଲ୍ ଉପରକୁ ଯାଇ ଦେଖେ ତ, ମୁଁ ପୂରାପୂରି ଲଙ୍ଗଳା । ହଠାତ୍ ମୁଁ ଯେତେବେଳେ ଛୋଟ ହେଇଗଲି, ମୋ ଦେହରୁ ଜାମା ହଲକ ଢିଲା ହୋଇ ମନକୁ ଗଳି ପଡ଼ିଥାଏ । ମୋତେ ଭାରି ସଙ୍କୋଚ ଲାଗିଲା । ମୋ ଅବସ୍ଥା ଲକ୍ଷ୍ୟ କରି ଲୋକଟା କୁଆଡୁ କେଜାଣି ଗୋଟେ ରବର କଣ୍ଢେଇ ଆଣିଲା । କଣ୍ଢେଇଟି ପିନ୍ଧିଥାଏ ଗୋଟେ ଛୋଟ ପ୍ୟାଣ୍ଟ ଏବଂ ଜରିପକା କମିଜ । ସେ ହଲକ କଣ୍ଢେଇ ଦେହରୁ ଉତାରି ଲୋକଟା ମୋତେ ପିନ୍ଧିବାକୁ ଦେଲା । ମୁଁ ତାକୁ ଚଟାପଟ ପିନ୍ଧିପକାଇଲି । ତା'ପରେ ଚିଁଚିଁଆ କଣ୍ଠରେ

ରାଗିକରି ତାକୁ ପଚାରିଲି, ''ଯାଦୁ ଚକୋଲେଟ୍ ଖୁଆଇ ମୋତେ ଏଡ଼ିକି ଟିକେ ମଣିଷ କରିଦେଲ, ତୁମର ଉଦ୍ଦେଶ୍ୟ କ'ଣ ?''

ମୋ କଥାଶୁଣି ଲୋକଟା ଖୁବ୍ ଜୋର୍‌ରେ ହସିଲା । କହିଲା, ''ଏ ଯାଦୁ ନୁହଁ, ବାବା... ବିଜ୍ଞାନର ଚମତ୍କାର ! ମୁଁ ଜଣେ ରସାୟନ ବିଜ୍ଞାନୀ । ଦୀର୍ଘ ଦଶବର୍ଷ ଧରି ଗବେଷଣା ଚଳାଇଥିଲି । ରାସାୟନିକ ବଟିକା ପ୍ରୟୋଗ କରି ମଣିଷକୁ ଅତିଛୋଟ କିମ୍ବା ଅତିବଡ଼ କେମିତି କରାଯାଇପାରିବ, ତା'ରି ଉପରେ । ଆଜି ମୋତେ ସଫଳତା ମିଳିଗଲା । ହେଲେ ବାବା, ତମେ ଭୟ କରନି । ତିନିଦିନ ପରେ ତୁମେ ପୁଣି ତୁମ ପୂର୍ବ ଚେହେରା ଫେରିପାଇବ ଏବଂ ଘରକୁ ଫେରିଯିବ ।''

ମୁଁ ଦୁଃଖ ଏବଂ ଆଶ୍ଚର୍ଯ୍ୟରେ କାନ୍ଦକାନ୍ଦ ହୋଇ ପଚାରିଲି, ''ତିନିଦିନ କାଳ ମୋତେ ଏଠି ଏମିତି ରହିବାକୁ ପଡ଼ିବ ?''

''ହଁ... ଆଉ ଅନ୍ୟ କିଛି ଉପାୟ ନାହିଁ । ସେ ପରୀକ୍ଷାନଳୀରେ ଯେଉଁ ରସାୟନ ଫୁଟୁଛି, ତାହା ଚକୋଲେଟ୍ ବଟିକାରେ ପରିଣତ ହେବାପାଇଁ ଆଉରି ପ୍ରାୟ ସତୁରି ଘଣ୍ଟା ଲାଗିଯିବ । ସେଥିରୁ ଟିକେ ଖାଇଦେଲେ, ତୁମେ ପୁଣି ତୁମର ପୂର୍ବ ଚେହେରା ଫେରିପାଇବ । କିନ୍ତୁ ବ୍ୟସ୍ତ ହେବା ଦରକାର ନାଇଁ । ତମ ରହିବା, ଖାଇବା ଓ ଶୋଇବାର ସବୁ ବ୍ୟବସ୍ଥା ଏଠି ମୁଁ କରିଦେବି ।'' ଏହା କହି ସେ ତଳୁ ଗୋଟେ ବଡ଼ କାଠ ଡାବଲ ଉଠାଇ ଆଣି ଟେବୁଲ ଉପରେ ରଖିଲେ । ଚାରିପଟେ ତାର ଲୁହାଜାଲି ଲାଗିଥିଲା । ଗୋଟେ କବାଟ ମଧ ଥିଲା । ମୋତେ ସେ ତା'ଭିତରେ ପଶିବାକୁ କହିଲେ । ମୋ ଉଚ୍ଚତା ତ ମାତ୍ର ଦଶଇଞ୍ଚ, ତେଣୁ ସେ ଡାବଲ ଭିତରକୁ ମୁଁ ଠିଆଠିଆ ପଶିଯାଇପାରିଲି, ଭିତରେ ପଶି ଦେଖେ ତ ସେଇଟା ମୋ' ପାଇଁ ଗୋଟେ ବଡ଼ ହଲ୍‌ଘର । ଚେୟାର ଟେବୁଲ, ଗଦି-ପଲଙ୍କ ସବୁ ତା'ଭିତରେ ପଡ଼ିଛି । ସବୁ ଆସବାବପତ୍ର ମୋରି ମାପର । ମୁଁ ଯେଉଁ ତିନିଦିନ ସେଠାରେ ରହିଲି, ସେହି କାଠ-ଉଆସରେ ହିଁ ବିଶ୍ରାମ ନିଏ ।

ସକାଳୁ ଉଠିଲେ ବୈଜ୍ଞାନିକ ମୋତେ ନେଇ ଗୋଟେ ପାଣିଭର୍ତ୍ତି ବାଲଟି ଭିତରେ ଛାଡ଼ି ଦିଅନ୍ତି । ବାଲଟିଏ ପାଣି ମୋ' ପାଇଁ ବେକେ କି ଛାତିଏ । ତା' ଭିତରେ ମୁଁ ମନଇଚ୍ଛା ଗାଧୁଆପାଧୁଆ କରେ । ଭୋକ ହେଲେ ମୋତେ ସେ ଅଙ୍ଗୁର ଦାନା ଦି'ଚାରିଟା ଦିଅନ୍ତି । ଗୋଟେ ଗୋଟେ ଅଙ୍ଗୁର ତ ମୋ ପାଇଁ ପାଣିକଖାରୁଟା ପରି । ଦୁଇ ଚାରିଟା ଖାଇ ପାରିବି କୁଆଡୁ ? ଗୋଟାକରେ ପେଟ ଭରିଯାଏ । ଅଧକପ୍ କ୍ଷୀର ପିଇଦେଲେ ଗୋଟେ ଦିନ ଚାଲିଯାଏ । ଦିନସାରା ମୁଁ ଗୁଣ୍ଡୁଚିମୂଷା ପରି ତଳ ଉପର ହେଇ ପରୀକ୍ଷାଗାର ସାରା

ବୁଲୁଥାଏ । ବୈଜ୍ଞାନିକଙ୍କ ଗବେଷଣା କାମ ଦେଖୁଥାଏ । ପ୍ରତିଦିନ ସନ୍ଧ୍ୟାରେ ସେ ମୋତେ ବଜାର ବୁଲେଇବାକୁ ନିଅନ୍ତି, କିନ୍ତୁ ପକେଟ୍ ଭିତରେ ଲୁଚେଇ କରି ।



ବୈଜ୍ଞାନିକ ଚାହୁଁଥିଲେ, ଏମିତି ଗୋଟେ ଅଦ୍ଭୁତ ସଫଳତା ସେ ପାଇଛନ୍ତି ବୋଲି ହଠାତ୍ ଦୁନିଆଁ ଲୋକ ନଜାଣନ୍ତୁ । ତେଣୁ ସେ ମୋତେ ଯେତେବେଳେ ବାହାରକୁ ନିଅନ୍ତି, ତାଙ୍କ କୋଟ୍‌ର ଗଭୀର ପକେଟ୍ ଭିତରେ ପୂରାଇ ଦିଅନ୍ତି । ମୁଁ ତା ଭିତରେ ବେକ ପର୍ଯ୍ୟନ୍ତ ବୁଡ଼ିରହେ ଏବଂ ମା' ମୁଣିରେ ଥିବା କଙ୍ଗାରୁଛୁଆ ପରି କେବଳ ମୁଣ୍ଡଟା କାଢ଼ି ଜୁଲୁଜୁଲୁ କରି ବାହାରର ଦୃଶ୍ୟ ଉପଭୋଗ କରୁଥାଏ । ତାଙ୍କ କୋଟ ପକେଟରେ ରହି ବାଙ୍ଗାଲୋର ସହର ଭ୍ରମଣର ସେ ଯେଉଁ ମଜା, ମୁଁ ଜୀବନରେ ଭୁଲିପାରିବିନି ।

ବେଳେବେଳେ ମୁଁ ଭାବେ, ସଂସାରର ସବୁ ମଣିଷ ଯଦି ଏମିତି 'ଲିଲିପୁଟ୍' ପାଲଟି ଯାଆନ୍ତେ କେଡ଼େ ମଜା ନହୁଅନ୍ତା ? ଖାଇବା ପିଇବାରେ ଆଉ ଅଭାବ ରହନ୍ତାନି । କେତେ କମ୍ ଜାମାପଟାରେ ଜୀବନଟା କଟିଯାଆନ୍ତା । ଏତେ ବଡ଼ ବଡ଼ ଘର

କରିବାକୁ ପଡ଼ନ୍ତାନି । ପୃଥିବୀର ସବୁ ସମସ୍ୟାର ସମାଧାନ ବୋଧେ ହୋଇଯାଆନ୍ତା । ହେଲେ ଏଟା କ'ଣ ସମ୍ଭବ ?

ଦିନେ ବଡ଼ ମଜାହେଲା । ହଠାତ୍ ସେଦିନ ବୈଜ୍ଞାନିକଙ୍କ ଜଣେ ସାଙ୍ଗ ଆସି ପହଞ୍ଚିଗଲେ । ବୈଜ୍ଞାନିକ ତ ଚାହୁଁଥିଲେ, କେହି ମୋ ବିଷୟରେ ନଜାଣନ୍ତୁ । ତେଣୁ ସେ ମୋତେ କେଉଁଠି ଲୁଚାଇବେ କିଛି ଠିକ୍ କରି ନପାରି କାନ୍ଥରେ ଥିବା ଗୋଟେ ବହି ର୍‍ୟାକ୍ ଉପରେ ଠିଆ କରିଦେଲେ । ସତେ ଯେମିତି ମୁଁ କଣ୍ଢେଇଟିଏ । ବନ୍ଧୁ ଆସି କିଛି ସମୟ ବସି ଗପସପ କଲେ । ତା' ଭିତରେ ମୁଁ ଟିକିଏ ମଜା କରିବାକୁ ଚାହିଁଲି । ବନ୍ଧୁଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ମୁଁ ହାତଗୋଡ଼ ହଲେଇଲି । ବିଭିନ୍ନ ଅଙ୍ଗଭଙ୍ଗୀ କଲି । ହୁସ୍... ହୁସ୍ ଶବ୍ଦ କଲି । ସେ ଯେତେବେଳେ ମୋ' ଆଡ଼କୁ ଅନେଇଲେ, ମୁଁ ଜିଭ କାଢ଼ି ତାଙ୍କୁ ଖତେଇ ହେଲି । ଆଖିମିଟିକା ମାରିଲି । ବନ୍ଧୁ ପୂରା ତାଜୁବ୍ !



''ଭାଇ... ଏ ବିଚିତ୍ର କଣ୍ଢେଇଟା କେଉଁଠୁ ଆଣିଲ ?'' ବନ୍ଧୁ ପଚାରିଲେ ବୈଜ୍ଞାନିକଙ୍କୁ ।

"ମୋର ଜଣେ ଜାପାନୀ ସାଙ୍ଗ ପଠେଇଛନ୍ତି" ବୈଜ୍ଞାନିକ ମିଛ କହିଲେ । ଜାପାନୀ କଣ୍ଢେଇ ନାଁ ଶୁଣି ବନ୍ଧୁଙ୍କର ଆଗ୍ରହ ଆହୁରି ବଢ଼ିଗଲା । ସେ ର୍‍ୟାକ୍ ଉପରୁ ମୋତେ ଉଠାଇନେଇ ଓଲଟପାଲଟ କରି ତାଳୁରୁ ତଳିପା ପର୍ଯ୍ୟନ୍ତ ପରୀକ୍ଷା କଲେ । ବୋଧହୁଏ କିଛି କୂଳକିନାରା ପାଇଲେନି । ପୁଣି ଯଥାସ୍ଥାନରେ ମୋତେ ଠିଆ କରିଦେଇ ସେ ଚାଲିଗଲେ ।

ମୁଁ ଭାବିଥିଲି, ପରୀକ୍ଷାଗାର ଭିତରେ ତିନିଦିନ ମୋର ଦୁଃଖରେ କଟିବ; କିନ୍ତୁ ଖୁବ୍ ମଜାମଉଜରେ କଟିଗଲା । ସତୁରି ଘଣ୍ଟା ପରେ ଯେତେବେଳେ ପରୀକ୍ଷାନଳୀର ରସାୟନ-ଚକୋଲେଟ୍ ପ୍ରସ୍ତୁତ ହୋଇଗଲା, ସେଥିରୁ ଗୋଟେ ଛୋଟ ଦାନା ଆଣି ବୈଜ୍ଞାନିକ ମୋତେ ଖାଇବାକୁ ଦେଲେ । ମୁଁ ତାକୁ ଯେମିତି ପାଟିରେ ପକେଇଚି ପୁଣି ମୁଁ ମୋର ପୂର୍ବ ଅବସ୍ଥାକୁ ଫେରି ଆସିଲି । ଚଟାପଟ ଯାଇ ପ୍ରଥମେ ମୋ ନିଜ ଜାମାପଟା ପିନ୍ଧି ପକେଇଲି । ତାପରେ ମୁଁ ବୈଜ୍ଞାନିକଙ୍କୁ ଧନ୍ୟବାଦ ଦେଇ ବିଦାୟ ନେଲି ।

ବୈଜ୍ଞାନିକ ମୋତେ ବାରମ୍ଭାର ତାଗିଦା କରି କହିଥିଲେ ଯେ- ତାଙ୍କ ଗବେଷଣାର ରହସ୍ୟ କିମ୍ବା ଚକୋଲେଟ୍‌ର ଚମତ୍କାର କଥା ମୁଁ ବାହାରେ ଯେମିତି ପ୍ରକାଶ ନକରେ । ହେଲେ, ପିଲାମାନେ, ତୁମମାନଙ୍କୁ କେବଳ ସତର୍କ କରିବା ପାଇଁ ଆଜି ଏ ରହସ୍ୟମୟ ଘଟଣାଟି କହିଦେଲି । ମନେରଖ, ତୁମେମାନେ କାହାକୁ କହିବନି ।



# ଟେଲିକ୍ଲକ୍ ର ମଜା

ସେଦିନ ଥିଲା ମୋର 'ଜନ୍ମଦିନ' । ସ୍କୁଲ୍‌ରୁ ଫେରିବା ପରେ ବୋଉ ମୋ ହାତକୁ ଗୋଟେ ଚକମକିଆ ପ୍ୟାକେଟ୍ ବଢ଼ାଇଦେଇ କହିଲା, ''ମାମୁ ପଠାଇଛନ୍ତି, ନେ ଖୋଲ୍ ।'' ବହି-ଖାତା ଥୋଇଦେଇ ମନ ଖୁସିରେ ମୁଁ ପ୍ୟାକେଟ୍‌ଟାକୁ ଖୋଲିବାରେ ଲାଗିଲି ।

ପିଲାମାନେ, ମୋ' ମାମୁ ଜାପାନରେ ଅଛନ୍ତି ବୋଲି ମୁଁ ତୁମମାନଙ୍କୁ ଆଗରୁ ବି ଥରେ କହିଛି । ସେ ଜଣେ ଇଲେକ୍ଟ୍ରୋନିକ୍ସ ଇଞ୍ଜିନିୟର । ପ୍ରତିବର୍ଷ ମୋ ଜନ୍ମଦିନରେ ସେ ସେଠାରୁ ଉପହାରମାନ ପଠାନ୍ତି । ଖୁବ୍ ବଢ଼ିଆ ବଢ଼ିଆ ଇଲେକ୍ଟ୍ରୋନିକ୍ସ ଖେଳନା । ମୁଁ ଭାବିଲି, ଇଏ ମଧ୍ୟ ସେପରି କିଛି ଗୋଟେ କଉତୁକିଆ ଜିନିଷ ହେଇଥିବ । କିନ୍ତୁ ପ୍ୟାକେଟ୍ ଖୋଲି ଯାହା ଦେଖିଲି, ମନଟା ମୋର ଫିକା ପଡ଼ିଗଲା । ସେଇଟା ଥିଲା ଗୋଟେ ଟେବୁଲ ଘଣ୍ଟା । ଯା'ହେଲେ ବି ଜାପାନୀ ଘଣ୍ଟା । ମନକୁ ବୁଝାଇଲି ।

ଖୋଳ ଭିତରୁ ଘଣ୍ଟାଟାକୁ ବାହାର କରି ଓଲଟପାଲଟ କରି ଦେଖିଲି । ଆମ ସାଧାରଣ ଟେବୁଲ ଘଣ୍ଟାଠାରୁ ସେଇଟା ଟିକେ ଅଲଗା ଜଣାପଡୁଥିଲା । ଘଣ୍ଟା ଟା ଟିକ୍... ଟିକ୍... ଶବ୍ଦ କରି ଚାଲୁଥିଲା ।

ଖୋଳ ଭିତରୁ ଖଣ୍ଡେ ଚାରିଚଉତା କାଗଜ ବାହାରିଲା । ଦେଖିଲି, ମାମୁଙ୍କ ହାତଲେଖା ଚିଠିଖଣ୍ଡେ । ଘଣ୍ଟାଟିର ବ୍ୟବହାର ଏବଂ ତା'ର କାର୍ଯ୍ୟଦକ୍ଷତା ସମ୍ପର୍କରେ ସେ ସେଥିରେ ଲେଖିଥିଲେ । ଚିଠିଟା ପଢ଼ି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ସେ ଲେଖିଥିଲେ ଯେ- ଘଣ୍ଟାଟାକୁ ଯଦି କୌଣସି ଟେଲିଫୋନ୍ ଲାଇନ୍ ସହିତ ଯୋଡ଼ି ଦିଆଯାଏ, ତା'ହେଲେ ସେ ମଣିଷ ପରି କଥାବାର୍ତ୍ତା କରିବ । ଠିକ୍ ଠିକ୍ ସମୟ କହିବା ଛଡ଼ା ଅନେକ ଆଶ୍ଚର୍ଯ୍ୟଜନକ କାମ ମଧ୍ୟ ସେ କରିପାରିବ । ବିଜ୍ଞାନଭାଷାରେ ଘଡ଼ିଟିର ନାଁ ହେଉଛି 'ଟେଲିକ୍ଲକ୍' ।

ଚିଠିଟା ପଢ଼ିବାପରେ ମୋ କୌତୂହଳ ବଢ଼ିଗଲା । ମୁଁ ସଙ୍ଗେ ସଙ୍ଗେ ଯାଇ ଖଣ୍ଡେ ତାର ଯୋଗାଡ଼ କଲି । ଚିଠିରେ ଲେଖାଥିବା ପ୍ରକାରେ ଘଡ଼ିଟିର ପଛପାଖରେ ଗୋଟେ

ଛୋଟ 'ପ୍ଲଗ୍-ପଏଣ୍ଟ୍' ଥିଲା । ତା' ପାଖରେ ଛୋଟ ବଟନ୍‌ଟିଏ ଥିଲା । ଆମ ଟେଲିଫୋନ୍‌ରୁ ତାରଟାକୁ ଯୋଡ଼ିଆଣି ସେ ପଏଣ୍ଟ୍‌ରେ ଖଞ୍ଜିଦେଲି । ତା'ପରେ ବଟନ୍‌କୁ ଚିପିଲି ।

ଆଶ୍ଚର୍ଯ୍ୟ ! ଘଡ଼ି ଭିତରୁ ଶୁଣାଗଲା ଗୋଟେ ସ୍ପଷ୍ଟ ଓ ମଧୁର କଣ୍ଠସ୍ୱର । "ହେଲୋ... ବିନୁ (ମୋ ଡାକ ନାମ 'ବିନୁ') ! ଶୁଭସନ୍ଧ୍ୟା । ତୁମକୁ ଜନ୍ମଦିନର ଅଭିନନ୍ଦନ ।" ଗୋଟେ



ବିଦେଶୀଯନ୍ତ୍ର ଭିତରୁ ନିଜ ନାଁ ଶୁଣି ମୋ ଖୁସି କହିଲେ ନସରେ । ମୁଁ ଯେତିକି ଖୁସି ତା'ଠୁ ଅଧିକ ଆଶ୍ଚର୍ଯ୍ୟରେ ବାପା ବୋଉ ଅନାଇ ରହିଲେ ଘଣ୍ଟାଟାକୁ ।

ମୋ ଜନ୍ମଦିନ ହେତୁ ବାପା ଠିକ୍ କରିଥିଲେ, ମୋତେ ନେଇ ସେଦିନ ବାହାରେ ଟିକେ ବୁଲାବୁଲି କରିବେ । ଗୋଟେ ଭଲ ହୋଟେଲ୍‌ରେ ଖିଆପିଆ ହେବ... ଇତ୍ୟାଦି ! ହେଲେ, ଏ ବିଚିତ୍ର ଯନ୍ତ୍ରଟା ଯେତେବେଳେ ମୁଁ ପାଇଗଲି, ତାକୁ ଛାଡ଼ି ବାହାରେ ବୁଲିବାକୁ ମୋର ଆଉ ମନ ହେଲାନି । ମୁଁ କହିଲି, "ବାପା, ଆଜି ଆଉ ବୁଲାବୁଲି କରିବାନି । ଯାହା ବାହାରେ ଖାଇଥାନ୍ତେ, ତାକୁ ଘରକୁ ମଗାଇ ଦେବା । ଘରେ ବସି ମଜା କରିବା ।" ମୋ' କଥାରେ ବୋଉ ସଙ୍ଗେ ସଙ୍ଗେ ରାଜି ହେଇଗଲା । ସେ ଗୋଟେ ଲମ୍ବା ତାଲିକା ବାପାଙ୍କୁ

ବଢ଼ାଇଦେଇ କହିଲା, ‘‘ଦେଖ, ଆମ ବିନୁର ମନମୁତାବକ ଆଇଟମ୍ ହେଉଛି, ସାଦା ବିରିୟାନୀ, ପନୀରଭଜା ଆଉ ଛତୁ ତରକାରି, ତା’ ସହିତ କିଛି ମିଠା । ସାତଟା ବାଜିଲାଣି । ଡେରି ହେଲେ ମିଳି ନ’ପାରେ । ତେଣୁ ଏଇ ପାଖରେ ଥିବା ‘ନନ୍ଦନ ହୋଟେଲ୍’ରୁ ଏସବୁ ମଗାଇଦିଅ । ଘରେ ଖିଆପିଆ କରିବା ।’’ ବାପା ମଧ ଏ ପ୍ରସ୍ତାବରେ ରାଜି ହେଇଗଲେ ।

ଠିକ୍ ଏତିକିବେଳେ ‘ଟେଲିକ୍ଲକ୍’ରୁ ଶୁଣାଗଲା ସେହି ଆଶ୍ଚର୍ଯ୍ୟଜନକ କଣ୍ଠସ୍ୱର, ‘‘ବିନୁ, ତୁମ ସାଙ୍ଗ ମନୁ ଏବଂ ତା ବାପା-ବୋଉ ଆସି ଗେଟ୍ ବାହାରେ ଅପେକ୍ଷା କରିଛନ୍ତି । ସେମାନଙ୍କୁ ଯାଇ ଡାକିଆଣ ।’’

ଏହାଶୁଣି ଆମେ ତିନିହେଁ ତଟସ୍ଥ ! ଭାବିଲି ଗେଟ୍ ବାହାରେ କେହି ଠିଆହେଇଥିବା କଥା ଘଡ଼ି ଜାଣିଲା କେମିତି ? ବାପା କହିଲେ, ସେମାନେ ଘରକୁ ନଆସି ଗେଟ୍ ବାହାରେ କାହିଁକି ଅପେକ୍ଷା କରିଛନ୍ତି ? ବୋଉ କହିଲା, ‘‘ଆରେ... । ସଞ୍ଜବେଳେ ମୁଁ ଗେଟ୍‌ଟାକୁ ଭିତରପଟୁ ତ ଲକ୍ କରିଦେଇଥିଲି, ବାହରୁ କେହି ସେଟା ଖୋଲି ପାରିବେନି । ଗଲୁ... ଗଲୁ... ବିନୁ. ଗେଟ୍‌ଟା ଖୋଲିଦେବୁ ।’’

ମୁଁ ସଙ୍ଗେ ସଙ୍ଗେ ଗେଟ୍ ପାଖକୁ ଦଉଡିଲି । ଏଣେ ମନେ ମନେ ଭାବୁଥାଏ, ଗେଟ୍‌ର ଦୂରତା ତ ଡ୍ରଇଂରୁମ୍ ପାଖରୁ ପ୍ରାୟ ପଚାଶ ମିଟର ହେବ । ଗେଟ୍ ବାହାରେ କେହି ଅଛନ୍ତି ବୋଲି ଟେଲିକ୍ଲକ୍ କେମିତି ଜାଣିଲା ?

ଗେଟ୍ ପାଖରେ ପହଞ୍ଚି ଦେଖେତ, ସତକୁ ସତ ମନୁ ଘର ମାରୁତି କାର୍‌ଟା ଠିଆ ହେଇଛି । ମନୁ ଏବଂ ତା’ ବାପାବୋଉ ଗୋଟେ ପ୍ୟାକେଟ୍ ଧରି ଅପେକ୍ଷା କରିଛନ୍ତି । ମୁଁ ଗେଟ୍ ଖୋଲିଲି ଏବଂ ଗେଟ୍ ବନ୍ଦଥିବା ହେତୁ ସେମାନଙ୍କ ଆଗରେ ଦୁଃଖ ପ୍ରକାଶ କଲି । ସେ ତିନିହେଁ ଭିତରକୁ ଆସିଲେ ।

ମନୁ ମୋର ଘନିଷ୍ଠ ସାଙ୍ଗ । ତାଙ୍କ ଘର ମଧ ସେଇ ଏକା ସହରରେ । ସେମାନେ ହଠାତ୍ ପହଞ୍ଚି ଆଶ୍ଚର୍ଯ୍ୟ କରିଦେବାପାଇଁ ଆଗରୁ ଖବର ନକରି ଚାଲିଆସିଥିଲେ । ଯା’ ହେଉ ଆମକୁ ଭାରି ଖୁସି ଲାଗିଲା ।

ଆମ ଦୁଇପରିବାର ମଧରେ ଗୋଟେ ଅପୂର୍ବ ସଂଯୋଗ ଥିଲା । ମନୁ ଯେମିତି ମୋ ସାଙ୍ଗ, ତା’ବାପା ମଧ ମୋ’ ବାପାଙ୍କର ପିଲାଦିନର ସାଙ୍ଗ । ତା’ ବୋଉ ବି ମୋ ବୋଉର କ୍ଲାସ୍‌ମେଟ୍ । ବାପାବୋଉମାନଙ୍କର ଯଦି କେବେ ଭେଟ ହୋଇଯାଏ, ତା’ହେଲେ, ଜାଣ କଥା ସରିଲା । ସ୍ଥାନକାଳପାତ୍ର ଭୁଲି ପୂରା ମଜ୍ଜିଯାଆନ୍ତି ଗପରେ । ବାପା ତାଙ୍କ ପିଲାଦିନର

ଗୋଟେ ଗୋଟେ ମଜାଳିଆ ଘଟଣା ଏମିତି ବଖାଣୁଥାନ୍ତି ଯେ ଆମେ ସବୁ ହସି ହସି ବେଦମ୍ । ଏମିତି ଗପସପରେ ଅନେକ ସମୟ ବିତିଗଲା ।



ଶେଷରେ ମୁଁ ମୋର ବିଚିତ୍ର ଉପହାର 'ଟେଲିକ୍ଲକ୍' ସେମାନଙ୍କୁ ଦେଖାଇଲି । ସେ କେମିତି କଥା କହିପାରେ ଏବଂ ଅତିଥି ଆସିଲେ ଖବର ଦେଇପାରେ ସେ ବିଷୟରେ କହିଲି । ସେମାନେ ମୋ' କଥାରେ ଆଦୌ ବିଶ୍ୱାସ ଗଲେନି ।

ବୋଉ ଘଣ୍ଟାକୁ ଦେଖି ଚମକି ପଡ଼ିଲା । କାରଣ ରାତି ଦଶଟା ବାଜି ଯାଇଥିଲା । ବାପା ଗପରେ ଏମିତି ଭୋଳ ହେଇଯାଇଥିଲେ ଯେ ହୋଟେଲକୁ ଅର୍ଡ଼ର ଦେବାକୁ ଭୁଲିଯାଇଥାନ୍ତି । ଘରେ ଏଣେ ତିନି ତିନି ଜଣ ଅତିଥି, ଖାଇବା ନାହିଁ । ତାଙ୍କ ମୁଣ୍ଡ ଘୂରାଇବାକୁ ଲାଗିଲା ।

ଠିକ୍ ଏତିକିବେଳେ କିଏ କବାଟ ଠକ୍ ଠକ୍ କଲା । ମୁଁ ଯାଇ କବାଟ ଖୋଲି ଦେଖେତ, ଦୁଇଜଣ ଧଳାଡ୍ରେସ୍ ପିନ୍ଧିଥିବା ହୋଟେଲ ବୟ ଗୁଡ଼ାଏ ଟ୍ରେ, ଥାଳିଆ, ପୁଡ଼ିଆ ଧରି ଠିଆ ହୋଇଛନ୍ତି । ସେମାନେ ଆସି ଟେବୁଲ ଉପରେ ଖାଦ୍ୟ ସବୁ ସଜାଡ଼ିଦେଇ ଗଲେ । ମୁଁ ଦେଖିଲି ବୋଉ କହିଥିବା ପ୍ରକାରେ ମୋ ପ୍ରିୟ ଆଇଟମ୍ ସବୁ ଆସିଛି । ବାପାଙ୍କୁ ପଚାରିଲି, ‘‘ଆପଣ ତ ଅର୍ଡ଼ର ଦେଇନଥିଲେ, ଏସବୁ ଆସିଲା କେମିତି ?’’ ସେ ଉତ୍ତର ଦେବା ପୂର୍ବରୁ ‘ଟେଲିକ୍ଲକ୍’ରୁ ଶୁଣାଗଲା, ‘‘ମୁଁ ଅର୍ଡ଼ର ଦେଇଛି, ବିନୁ !’’ ବାପାଙ୍କ ଭୁଲାମନ ଦେଖି ମୁଁ ମୋ କାମ କରିଦେଇଛି । ଅତିଥିମାନଙ୍କ ପାଇଁ ଅଧିକା ଖାଦ୍ୟ ମଧ୍ୟ ବରାଦ ଦେଇଥିଲି, ଠିକ୍ ଅଛି କି ନା ଦେଖିନିଅ ।’’

ଆମେ ଆଉ ଖାଇବୁ କ'ଣ, ‘ଟେଲିକ୍ଲକ୍’ର ଭାଷଣ ଶୁଣି ପୂରା ତାଜୁବ୍ । ସାଧାରଣ ଗୋଟେ ଟେବୁଲ ଘଣ୍ଟା, ଏମିତି ଅସମ୍ଭବ କାମ କରିପାରେ ବୋଲି ବିଶ୍ୱାସ ଲାଗିଲାନି । ସଙ୍ଗେ ସଙ୍ଗେ ଆମେ ‘ନନ୍ଦନ ହୋଟେଲ’ କୁ ଟେଲିଫୋନ୍ କରି ବୁଝିଲୁ ଯେ ରାତି ଆଠଟାରେ ଫୋନ୍ ମାଧ୍ୟମରେ ସେମାନଙ୍କୁ ଅର୍ଡ଼ର ଦିଆଯାଇଥିଲା । ଘର ନମ୍ବର ମଧ୍ୟ ଦିଆଯାଇଥିଲା ।

ଯା’ହେଉ ସେଦିନ ରାତିରେ ଖିଆପିଆ ଶେଷ କରି ଅତିଥିମାନେ ଚାଲିଗଲେ । ଆମେ ଶୋଇବାକୁ ଗଲୁ । ‘ଟେଲିକ୍ଲକ୍’ର ଅଦ୍ଭୁତ କାର୍ଯ୍ୟଦକ୍ଷତା କଥା ଭାବି ଭାବି ଅନେକ ଡେରିରେ ମୋର ନିଦ ହେଲା । ହଠାତ୍ କଲିଂବେଲ୍ ଶବ୍ଦଶୁଣି ନିଦଟା ଚାଉଁକିନା ଭାଙ୍ଗିଗଲା । ଦେଖେତ ରାତି ତିନିଟା । ବାପାବୋଉ ମଧ୍ୟ ଉଠି ଆସିଲେ । ଏତେ ରାତିରେ କିଏ ଡାକୁଛି ଭାବି ବାପା ଝରକା ଖୋଲି ଦେଖିଲେ । ବାରଣ୍ଡାରେ ଦୁଇଜଣ ପୋଲିସ୍ ଠିଆ ହୋଇଥାନ୍ତି । ଆମକୁ ଟିକେ ସାହସ ଲାଗିଲା, କବାଟ ଖୋଲି ଦେଖିଲୁ, ସେମାନଙ୍କ ସହିତ ଦୁଇଜଣ କଳାଭୁଷୁଣ୍ଡା ଲୋକ ଠିଆ ହେଇଛନ୍ତି, ହାତରେ ହାତକଡ଼ି ପଡ଼ିଛି । ଜଣେ ପୋଲିସ୍ କହିଲେ, ‘‘ଯା’ ହେଉ ଆଜ୍ଞା, ଠିକ୍ ସମୟରେ ଥାନାକୁ ଫୋନ୍ କରି ଆପଣ ନିଜ ଧନ-ଜୀବନ ରକ୍ଷା କରିବା ସହିତ ଏ ପୁରୁଣା ଦାଗୀ ଦୁଇଟାକୁ ଧରିବାରେ ଆମକୁ ସହାୟତା

କରିଛନ୍ତି । ସେଥିପାଇଁ ଆପଣଙ୍କୁ ଧନ୍ୟବାଦ । ଆମେ ଏମାନଙ୍କୁ ଧରି ଥାନାକୁ ଚାଲିଲୁ । ଆପଣମାନେ ନିଶ୍ଚିନ୍ତରେ ଶୋଇବେ ଯାଆନ୍ତୁ ।''

ସେମାନଙ୍କ କଥା ଶୁଣି ଆମେ ଆଉ କହିବୁ କ'ଣ, ଭକୁଆଙ୍କ ପରି ପରସ୍ପରକୁ ଚାହିଁ ରହିଲୁ । ଆମେ ଜାଣିପାରିଲୁ ଯେ ଏ କାମ ମଧ୍ୟ ଆମ 'ଟେଲିକ୍ଲକ୍' ମହାଶୟଙ୍କର !

ବାପାବୋଉ କବାଟ ବନ୍ଦ କରି ଶୋଇବାକୁ ଗଲେ । ମୁଁ ଟେଲିକ୍ଲକ୍ ପାଖକୁ ଯାଇ ପଚାରିଲି, ''ଆଚ୍ଛା ଟେଲିକ୍ଲକ, ଥାନାକୁ ତୁମେ ଫୋନ୍ କରିଥିଲ ?'' ଉତ୍ତର ଆସିଲା,



'ହଁ' । ''କିନ୍ତୁ ଛୋଟ ଯନ୍ତ୍ରଟିଏ ହୋଇ ତୁମେ ଏ ଅଦ୍ଭୁତ କାମସବୁ କେମିତି କରିପାରୁଛ ?'' ମୁଁ ପୁଣି ପଚାରିଲି । ସେ କହିଲା, ''ଦେଖ ବିନ୍ଟୁ, ମୁଁ ଗୋଟିଏ ଯନ୍ତ୍ର । ମୋତେ ସ୍ୱତନ୍ତ୍ର ଭାବେ କେବଳ ତୁମ ପରିବାର ପାଇଁ ତିଆରି କରାଯାଇଛି । ତୁମ ସମ୍ପର୍କରେ ଅନେକ ତଥ୍ୟ ଏବଂ ତୁମ ପରିବାର ସମ୍ପର୍କରେ ଢେର୍ ସୂଚନା ଆଗରୁ ମୋ ଭିତରେ ପ୍ରିଣ୍ଟ ହୋଇ ରହିଛି । ତୁମ ସାଙ୍ଗସାଥୀ, ବନ୍ଧୁବାନ୍ଧବ ଏବଂ ଏ ସହରର କେତେକ ପ୍ରଧାନ ଅଫିସ୍, ବ୍ୟାଙ୍କ୍, ଥାନା,

ହୋଟେଲ୍, ଇତ୍ୟାଦିର ଟେଲିଫୋନ୍ ନମ୍ବର ମଧ୍ୟ ମୋ ଭିତରେ ଫିଡ୍ କରାଯାଇଛି । ଏସବୁ ଛଡ଼ା ମୋ ମୁଣ୍ଡ ଭିତରେ ଖଞ୍ଜା ଯାଇଛି ଗୋଟେ କ୍ଷୁଦ୍ର 'ଇଲେକ୍ଟ୍ରୋନିକ୍ସ ବ୍ରେନ୍ ସେଣ୍ଟର' ବା ଇ.ବି.ସି. । ତାକୁ ତୁମେ 'ମିନି ମସ୍ତିଷ୍କ' କହିପାର । ମୋ ଇ.ବି.ସି. ମଣିଷ ମସ୍ତିଷ୍କ ପରି ଭଲ-ମନ୍ଦ, ଭୁଲ-ଠିକ୍ ଇତ୍ୟାଦି ବିଚାର କରି ଉପଯୁକ୍ତ ପଦକ୍ଷେପ ନେଇପାରେ । ମୋ ଡାଏଲ୍ ଚାରିପାଖରେ ଦେଖ, ଛୋଟଛୋଟ କଣା ଅଛି। ତା' ଭିତରେ ଅନେକ ଗୁଡ଼ିଏ ମାଇକ୍ରୋରିସିଭର ଫିଟ୍ କରାଯାଇଛି । ମାଇକ୍ରୋରିସିଭର ଅତି ଶକ୍ତିଶାଳୀ । ଶହେ ମିଟର ଦୂରରେ ଉଡୁଥିବା ଗୋଟେ ମଶାର ଗୁଣୁଗୁଣୁ ଶବ୍ଦକୁ ମଧ୍ୟ ସେ ରେକର୍ଡ଼ କରିପାରେ ।

ତୁମ ଅତିଥିମାନେ ଆସି ଯେତେବେଳେ ଗେଟ୍ ପାଖରେ ପହଞ୍ଚିଲେ, ସେମାନଙ୍କ କଥାବାର୍ତ୍ତା ମୋ ମାଇକ୍ରୋରିସିଭର ଧରିଆଣି ଇ.ବି.ସି.ରେ ପହଞ୍ଚାଇଦେଲା । ଇ.ବି.ସି. ତର୍ଜମା କରି ଦେଖିଲା ଯେ ସେମାନେ ତୁମର ଅତିଥି, ଭିତରକୁ ଆସିବାକୁ ଚାହୁଁଛନ୍ତି । କିନ୍ତୁ ଗେଟ୍ ବନ୍ଦ । ଇ.ବି.ସି.ର ନିର୍ଦ୍ଦେଶ ପାଇ ମୁଁ ତୁମକୁ ସୂଚନା ଦେଲି । ଦ୍ୱିତୀୟରେ ତୁମ ବୋଉ ଯେତେବେଳେ ଖାଦ୍ୟ ତାଲିକା ପଢ଼ିଲେ ମୋ ରିସିଭର ତାକୁ ଧରିନେଇ ଇ.ବି.ସି.କୁ ଜଣାଇଥିଲା । ତୁମ ବାପାଙ୍କ ଭୁଲାମନ ଦେଖି ଇ.ବି.ସି. ସ୍ଥିର କଲା ଯେ ଡେରି ହେଲାଣି, ଅର୍ଡ଼ରଟା ହୋଟେଲରେ ଦେଇଦେବା ଉଚିତ । ମୋ ସହିତ ତୁମ ଟେଲିଫୋନ୍ ଯୋଗାଯୋଗ ତ ଅଛି । ଟେଲିଫୋନ ନମ୍ବର ମଧ୍ୟ ଅଛି । ମୁଁ ଅର୍ଡ଼ରଟା ଟେଲିଫୋନ୍ ମାଧ୍ୟମରେ ହୋଟେଲକୁ ଦେଇଦେଲି । ଠିକ୍ ସେମିତି, ଚୋର ଦୁହେଁ ଘରର ଝରକା ଭାଙ୍ଗି ଭିତରେ ପଶିବାକୁ ଯୋଜନା କରୁଥିଲେ । ଇ.ବି.ସି.ରେ ଖବର ପହଞ୍ଚିବା ସଙ୍ଗେ ସଙ୍ଗେ ଥାନାକୁ ଜଣାଇବାକୁ ସେ ମୋତେ ନିର୍ଦ୍ଦେଶ ଦେଲା । ମୁଁ ତା କଥା ପାଳନ କଲି । ଏପରି ଅନେକ ଅସମ୍ଭବ କାମ ମୁଁ ଗୋଟିଏ ସ୍ଥାନରେ ରହି କରିପାରେ ।''

ଟେଲିକ୍ଲକ୍‌ର ଆତ୍ମକାହାଣୀ ଶୁଣି ମୁଁ ପୂରା ସ୍ତମ୍ଭୀଭୂତ ହୋଇଗଲି । ଏବେ ବି ଆମ ପାଖରେ ଟେଲିକ୍ଲକଟି ଅଛି ଏବଂ ବେଳେବେଳେ ଅସମ୍ଭବ କାମ ସବୁ କରି ଚମକାଇ ଦେଉଛି ।



# ସହରରେ ଡାଇନୋସାର୍

'ଡାଇନୋସାର୍' ! ଏ ନାଁ'ଟା ଶୁଣିଲେ ହିଁ ମନରେ ଆମର ଖେଳିଯାଏ ଆତଙ୍କ ! ସେ ଏକ ବିଶାଳକାୟ ପ୍ରାଣୀ । ହିଂସ୍ର ଏବଂ ଭୟଙ୍କର ! ତାକୁ ଆମେ ଯଦିଓ କେବେ ଦେଖିନେ; କିନ୍ତୁ ତା' ବିଷୟରେ ଜାଣିଛେ । ବହିପତ୍ରରେ ଅନେକ କଥା ପଢ଼ିଛେ । ସେ ଭୟାନକ ଜୀବର ଚରିତ୍ରକୁ ନେଇ କେତେକ ରୋମାଞ୍ଚକର ସିନେମା ମଧ୍ୟ ତିଆରି ହେଇଛି । ଉଣାଅଧିକେ ଆମେ ସମସ୍ତେ ଦେଖିଛେ ।

ପ୍ରାୟ ଛ' କୋଟି ବର୍ଷ ପୂର୍ବେ ପୃଥିବୀ ପୃଷ୍ଠରେ 'ଡାଇନୋସାର୍'ମାନେ ବାସ କରୁଥିଲେ । ସେମାନେ ପୃଥିବୀରୁ ଲୋପ ପାଇଲେ କେମିତି, ତାହା ସଠିକ୍ ଭାବେ କାହାକୁ ଜଣାନାହିଁ । ଜୀବ ବିଜ୍ଞାନୀମାନେ ଅନୁମାନ କରୁଛନ୍ତି, ସେ ଯୁଗରେ ପୃଥିବୀ ଉପରେ ପ୍ରବଳ ଉଲ୍କାପାତ କିମ୍ବା ଗ୍ରହାଣୁମାଡ଼ ହେଇଥିବ । ତା' ଫଳରେ ପୃଥିବୀରେ ଘଟିଥିବ ପ୍ରଚଣ୍ଡ ପ୍ରାକୃତିକ ବିପର୍ଯ୍ୟୟ । ସେଥିରେ ହିଁ 'ଡାଇନୋସାର୍' ପରି ବିଶାଳକାୟ ପ୍ରାଣୀମାନେ ଧ୍ୱଂସ ପାଇଯାଇଥିବା ସମ୍ଭବ ।

ସେ ଯା'ହେଉ, ଏ ଯୁଗରେ ଆଉ ସେ ପ୍ରାଣୀ ନାହାନ୍ତି । ହେଲେ ଆମ ଜୈବବିଜ୍ଞାନୀମାନେ 'ଡାଇନୋସାର୍' ପରି ବିଶାଳ ପ୍ରାଣୀକୁ ବିଜ୍ଞାନାଗାରରେ ମଧ୍ୟ ସୃଷ୍ଟି କରି ପାରନ୍ତି, ଏପରି ଏକ ରହସ୍ୟମୟ କାହାଣୀକୁ ନେଇ 'ଜୁରାସିକ୍ ପାର୍କ' ପରି ରୋମାଞ୍ଚକର ସିନେମା ତିଆରି ହୋଇଛି ।

ଠିକ୍ ସେପରି ଗୋଟେ ଅବିଶ୍ୱାସ୍ୟ ଅଥଚ ଲୋମହର୍ଷକ ଘଟଣା, କିଛି ବର୍ଷ ପୂର୍ବେ ଆମ କଲିକତା (ଆଜିର କୋଲ୍‌କାତା) ମହାନଗରୀରେ ଘଟିଯାଇଥିଲା । ଘଟଣାଟା ପୂରାପୂରି ସତ ହେଲେ ମଧ୍ୟ, ମନେହେବ କୌଣସି ରୋମାଞ୍ଚକର ସିନେମା କାହାଣୀ ପରି । କଲିକତାର ଲୋକେ ଆଜି ବି ସେ ଭୟାନକ ଘଟଣା ଭୁଲିପାରି ନାହାନ୍ତି ।

ଘଟଣାଟି ଏହିପରି–

ବିଶିଷ୍ଟ ରସାୟନ ବିଜ୍ଞାନୀ ପ୍ରଫେସର 'ରବିରତ୍ନମ୍'ଙ୍କ ନିଜ ଘର ବାଙ୍ଗାଲୋର । କିନ୍ତୁ ସେ ସ୍ଥାୟୀ ଭାବେ କଲିକତାରେ ହିଁ ରହୁଥିଲେ । ସହରଠାରୁ ପ୍ରାୟ ପଚାଶ କିଲୋମିଟର ଦୂରବର୍ତ୍ତୀ ଗୋଟେ ନିକାଞ୍ଚନ ଇଲାକାରେ ତାଙ୍କର ବିଜ୍ଞାନ ପ୍ରୟୋଗଶାଳା । ଗବେଷଣା ହିଁ ପ୍ରଫେସରଙ୍କ ଜୀବନ ଓ ଜୀବିକା । ଦିନରାତି ସେ ତାଙ୍କ ବିରାଟ ଲାବୋରାଟେରୀ ଭିତରେ ଏକାକୀ ବସି ନିମଗ୍ନ ଥାଆନ୍ତି ଗବେଷଣାରେ । ଗୋଟେ ବିଶେଷ ପ୍ରକାର ରାସାୟନିକ ଗବେଷଣା କାମରେ ସେ ବର୍ଷ ବର୍ଷ ଧରି ଲାଗି ରହିଥିଲେ, ତାହା ମଧ୍ୟ ଅତି ଗୁପ୍ତ ଭାବରେ । ସେ ଭାବୁଥିଲେ, ଯେଉଁ ଅଦ୍ଭୁତ କାମରେ ସେ ହାତ ଦେଇଛନ୍ତି, ଯଦି ସଫଳତା ମିଳିଯାଏ, ତା'ହେଲେ ପୃଥିବୀ ଦୋହଲିଯିବ । ଚମତ୍କୃତ କରିଦେବେ ସେ ସମଗ୍ର ଜଗତକୁ ! ଏତେ ବଡ଼ ସଫଳତା ପୃଥିବୀର କୌଣସି ବୈଜ୍ଞାନିକଙ୍କୁ ଆଜି ପର୍ଯ୍ୟନ୍ତ ମିଳିନି, ଯାହା ଏବେ ତାଙ୍କ ଗବେଷଣାର ଶେଷ ପର୍ଯ୍ୟାୟରେ ।

ଗବେଷଣାଗାରଠାରୁ ତାଙ୍କ ବସାଘର ପ୍ରାୟ ଦୁଇ କିଲୋମିଟର ଦୂର । ଘଟଣା ଦିନ ରାତି ପ୍ରାୟ ତିନିଟା ପର୍ଯ୍ୟନ୍ତ ସେ କାମରେ ଲାଗିଥିଲେ । ତା'ପରେ ବସାକୁ ଯାଇ ବିଶ୍ରାମ ନେଲେ । ସକାଳୁ ଶେଯ ଛାଡ଼ୁ ଛାଡ଼ୁ ପ୍ରାୟ ଆଠଟା । ଚଟାପଟ୍ ନିତ୍ୟକର୍ମ ସାରି କ'ଣ ଦି'ଟା ଖାଇଦେଇ, ପୁଣି ସେ ଚାଲିଯିବେ କାର୍ଯ୍ୟକ୍ଷେତ୍ରକୁ ।

ଦାନ୍ତ ବ୍ରସ୍ କରୁକରୁ ଅନ୍ୟମନସ୍କ ଭାବେ ସେ ଟି.ଭି.ର ନ୍ୟୁଜ୍ ଚ୍ୟାନେଲ୍‌ଟା ଅନ୍ କଲେ । ସେଇଟା ତାଙ୍କର ନିତିଦିନିଆ ଅଭ୍ୟାସ । ନଜର ପକାଇବାକୁ ତ' ତର ନାହିଁ; ସମ୍ବାଦ ପାଠକଙ୍କ ବାକ୍ୟଗୁଡ଼ିକ ପ୍ରତି କେବଳ କାନ ଦେବା କଥା । ସେଦିନ ହଠାତ୍ ଗୋଟେ ସମ୍ବାଦରେ ଚମକି ପଡ଼ିଲେ ସେ । ଅଇଁଠା ଫେଣଲଗା ବ୍ରସ୍‌ଟା ଅଜାଣତରେ ଖସିଗଲା ତାଙ୍କ ହାତରୁ । ଆଁ... କରି ସେ ଅନାଇ ରହିଲେ ଟି.ଭି. ପରଦାଆଡ଼େ । ସମ୍ବାଦ ପାଠକ ଭୀଷଣ ଭୟାତୁର କଣ୍ଠରେ ସମ୍ବାଦ ପଢୁଥିଲେ–

''ଏହି ସମ୍ବାଦ ମାଧ୍ୟମରେ କଲିକତାବାସୀଙ୍କୁ ପୁଣିଥରେ ସତର୍କ କରାଇ ଦିଆଯାଉଛି, ସହର ଛାଡ଼ି ସେମାନେ ଯଥାସମ୍ଭବ ଦୂରକୁ ଚାଲିଯାଆନ୍ତୁ । ଏ ମହାନଗରୀର ପୂର୍ବାଞ୍ଚଳରେ ହଠାତ୍ ଦେଖାଦେଇଛି ଏକ ଭୟାନକ 'ଡାଇନୋସାର୍' ଜାତୀୟ ପ୍ରାଣୀ । ଆଧୁନିକ ଯୁଗରେ 'ଡାଇନୋସାର୍' ! କଥାଟା ନିହାତି ଅବିଶ୍ୱାସ୍ୟ ଲାଗୁଥିଲେ ହେଁ ସତ । ହଠାତ୍ ଏ ପ୍ରାଣୀ ମହାନଗରୀ ଭିତରକୁ କୁଆଡୁ ଆସିଲା । ସମସ୍ତଙ୍କ ପାଇଁ ତାହା ଏକ ରହସ୍ୟମୟ ପ୍ରଶ୍ନ । ଅଧିକାଂଶ ଲୋକଙ୍କ ମତ ଯେ, ଏଡ଼େ ବିରାଟ ଜୀବଟା ନିଶ୍ଚୟ ସମୁଦ୍ର ଭିତରୁ ହିଁ ବାହାରିଥିବ । ହଁ...ସେ ଗୋଟେ ଅତି ବିଶାଳକାୟ ଜୀବ ! ଦେଖିବାକୁ ଅବିକଳ 'ଝିଟିପିଟି' ପରି; କିନ୍ତୁ

ଆକାରଟା, ଚାରିଗୋଡ଼ରେ ଚାଲୁଥିବା ଗୋଟେ ଛୋଟ ପାହାଡ଼ ! ସିନେମାରେ କଳ୍ପନା କରାଯାଇଥିବା 'ଡାଇନୋସାର୍' ଠାରୁ ମଧ୍ୟ ଏହାର ଆକାର ବଡ଼ । ତା'ଠୁ ଅଧିକ ହିଂସ୍ର ମଧ୍ୟ । ଜନ୍ତୁଟା ଯେଉଁଆଡ଼କୁ ମାଡ଼ିଯାଉଛି, ବିଲରେ ମଇ ବୁଲାଇବା ପରି, ଘର-ଦ୍ୱାର, କୋଠା-ବାଡ଼ି ସବୁ ଏକାକାର ହୋଇଯାଉଛି । ଲାଞ୍ଜଟା ବୁଲାଇଦେଲେ, ତିନି-ଚାରିମହଲା କୋଠାଗୁଡ଼ାକ ବାଲିଘର ପରି ଭୁଶୁଡ଼ି ପଡୁଛି । ତା' ଭୀଷଣାକାର ପଂଝା ତଳେ ଚାପି ହୋଇ ଶହଶହ୍ର ଲୋକ ମରୁଛନ୍ତି । ଅସଂଖ୍ୟ କ୍ଷତବିକ୍ଷତ ହୋଇ ଆର୍ତ୍ତଚିତ୍କାର କରୁଛନ୍ତି । ଅନେକେ



ସେ ହିଂସ୍ର ରାକ୍ଷସର ଶିକାର ମଧ୍ୟ ହେଲେଣି । ତେଣୁ ଆପଣମାନଙ୍କୁ ଅନୁରୋଧ, ସତର୍କ ହୋଇଯାଆନ୍ତୁ । କିଏ ଜାଣେ, କେତେବେଳେ ସେ କେଉଁ ଆଡ଼କୁ ମାଡ଼ିଯିବ ? ମହାନଗରୀର ପୋଲିସ୍ ବାହିନୀ, ସୁରକ୍ଷାବଳ, ଫାୟାର ବ୍ରିଗେଡ଼, ମିଲିଟାରୀ ଫୋର୍ସ, ସବୁ ଶକ୍ତି ଏକତ୍ରିତ ହୋଇ ସେ ରାକ୍ଷସ ଜୀବର ମୁକାବିଲା କରିଚାଲିଛନ୍ତି । ଗୁଳି-ଗୋଳା ଓ ତୋପ-ବନ୍ଧୁକ ଗର୍ଜନରେ ପୂର୍ବ କଲିକତା ପରିଣତ ହେଲାଣି ଏକ ଭୟଙ୍କର ରଣକ୍ଷେତ୍ରରେ । କିନ୍ତୁ ସେ ରାକ୍ଷସ ଜୀବଟା ଝିଟିପିଟି ପରି ଏଡ଼େ ତରକା ଯେ, ଏପର୍ଯ୍ୟନ୍ତ ସେ ତା' ଦେହରେ ସାମାନ୍ୟ କ୍ଷତଟାଏ ବି କରାଇ ଦେଇନି, ବରଂ ସେ କ୍ଷତବିକ୍ଷତ କରିଚାଲିଛି ସମଗ୍ର ସହରକୁ । ତେଣୁ ଆପଣମାନଙ୍କୁ ଅନୁରୋଧ କରାଯାଉଛି, ନିଜ ସୁରକ୍ଷା ନିଜେ କରନ୍ତୁ । ଯେତେ ଚଞ୍ଚଳ ପାରୁଛନ୍ତି ସହର ଛାଡ଼ି ନିରାପଦ ସ୍ଥାନକୁ ଚାଲିଯାଆନ୍ତୁ ।"

ପ୍ରଫେସର ରବିରତ୍ନମ୍ ଆଉ ବ୍ରସ୍ କରିବେ କ'ଣ, ଫଁ...ହେଇ ବସିପଡ଼ିଲେ ସୋଫା ଉପରେ । ତାଙ୍କ ଘର ଏବଂ ଗବେଷଣାଗାର ଅବଶ୍ୟ ପୂର୍ବ କଲିକତାଠାରୁ ପ୍ରାୟ ପଚାଶ କିଲୋମିଟର ଦୂରରେ । ତଥାପି ଘୋର ଚିନ୍ତାରେ ପଡ଼ିଗଲେ ସେ ।

ସମ୍ବାଦ ପାଠକ ଗ୍ଲାସେ ପାଣି ପିଇ ପୁଣି ଆରମ୍ଭ କଲେ, "ଦର୍ଶକଗଣ, ଆମ ଦୂରଦର୍ଶନ ଷ୍ଟୁଡ଼ିଓ ସେହି ଆତଙ୍କଗ୍ରସ୍ତ ଇଲାକାଠାରୁ ପ୍ରାୟ ତିରିଶ କିଲୋମିଟର ଦୂରରେ ଅବସ୍ଥିତ । ସେ ରାକ୍ଷସ ଜୀବ ଏପର୍ଯ୍ୟନ୍ତ ଏଠାରେ ପହଞ୍ଚିନି ; କିନ୍ତୁ କିଏ ଜାଣେ, କେତେବେଳେ ଆସି ଆମ ଟି.ଭି. ଟାୱାରକୁ ତାରାଗଛ ପରି ଓପାଡ଼ି ସମୁଦ୍ର ଗର୍ଭକୁ ଫୋପାଡ଼ି ନ'ଦେବ ?

ଆମ ଭ୍ରାମ୍ୟମାଣ ସମ୍ବାଦଦାତା ଏବଂ କ୍ୟାମେରା ଟିମ୍ କିନ୍ତୁ ସେ ଆତଙ୍କଗ୍ରସ୍ତ ଅଞ୍ଚଳରେ ବିଛେଇ ହୋଇ ରହିଛନ୍ତି । ଏଇକ୍ଷଣି ଗୋଟେ ଦୁଃଖଦାୟକ ସମ୍ବାଦ ଆମର ହସ୍ତଗତ ହେଲା । ଆମର ଜଣେ ଦୁଃସାହସୀ କ୍ୟାମେରାମ୍ୟାନ୍ 'ମୃଦୁଳ ମୁଖାର୍ଜୀ' । ରାକ୍ଷସ ଜୀବ ଆଗକୁ ଯାଇ ସିଧା ପ୍ରସାରଣ ପାଇଁ ସଟ୍ ନେଉଥିଲେ । ଦୁଃଖର କଥା, ହଠାତ୍ ସେ ରାକ୍ଷସଟା କ୍ୟାମେରା ସହିତ ତାଙ୍କୁ ଗୋଟା ଗିଳିଦେଲା । ତଥାପି ଆମର ଅନ୍ୟ ବନ୍ଧୁମାନେ ହଟି ଯାଇନାହାନ୍ତି । ଜୀବନକୁ ପାଣି ଛଡ଼େଇ ସେମାନେ ତା'ର ପିଛା କରି ଚାଲିଛନ୍ତି । ଯଥାସାଧ୍ୟ ଚେଷ୍ଟା କରୁଛନ୍ତି, ଆମ ପ୍ରସାରଣ କେନ୍ଦ୍ର ସହିତ ଯୋଗାଯୋଗ ରଖିବା ପାଇଁ । ବର୍ତ୍ତମାନ ଆମେ ଆପଣମାନଙ୍କୁ ନେଇଯାଉଛୁ ସିଧାପ୍ରସାରଣ ଦେଖାଇବା ପାଇଁ ପୂର୍ବ କଲିକତାର ସେହି ଆତଙ୍କଗ୍ରସ୍ତ ଇଲାକାକୁ... ।"

ସହସା ପରଦା ଉପରର ଦୃଶ୍ୟ ବଦଳିଗଲା । ଦେଖାଗଲା ଏକ ଭୀଷଣକାୟ ସରୀସୃପ ! ବଡ଼ ଅଦ୍ଭୁତ ତା'ର ଶାରୀରିକ ଗଠନ ! ସହରର ରାଜପଥ ଉପରେ ବୀରଦର୍ପରେ ଚାଲିଥିଲା ସେ । ରାସ୍ତା ଦୁଇପାଖରେ ଅସଂଖ୍ୟ ବିଧ୍ୱସ୍ତ ଅଟ୍ଟାଳିକା । ଛିନ୍ନ-ଛତ୍ର ଦୋକାନବଜାର । ପିମ୍ପୁଡ଼ିମନ୍ଦା ଉପରେ କେଇଖଣ୍ଡ ରଡ଼ନିଆଁ ପକାଇଦେଲେ ବିଚରା ପିମ୍ପୁଡ଼ିମାନଙ୍କ ଅବସ୍ଥା ଯାହାହେବ, ଲୋକେ ଠିକ୍ ସେମିତି ପ୍ରାଣ ବିକଳରେ ଇତସ୍ତତଃ ଦଉଡୁଥିଲେ । ବୁଲ୍‌ଡୋଜର୍ ପରି ଦେଖାଯାଉଥିବା ତା' ବିଶାଳ ପଞ୍ଝାତଳେ ଚାପି ହୋଇ ଅନେକେ ମରୁଥିଲେ । ସେ ରାକ୍ଷସର ପାଟିଟା ଦେଖାଯାଉଥିଲା ପର୍ବତ ଗହ୍ୱର ପରି ଏବଂ ତା' ଭିତରୁ ବୁଢ଼ା ଅଜଗର ପରି ପ୍ରକାଣ୍ଡ ଜିଭଟେ ବେଳେବେଳେ ବାହାରି, କୋଡ଼ିଏ ପଚିଶି ମିଟର ଦୂରରେ ଦଉଡ଼ି ଚାଲିଯାଉଥିବା ମଣିଷମାନଙ୍କୁ ଟେକି ନେଉଥିଲା । ତା' ଲାଞ୍ଜଟା ଦେଖାଯାଉଥିଲା ବୁଢ଼ା ବରଗଛର ବିଶାଳ ଗଣ୍ଡି ପରି ଏବଂ ସେ ଥରେ ବଙ୍କେଇ ଗଲେ ରାସ୍ତା ଦୁଇ ପାଖର ଖାଲ-ଢିପ ସବୁ ସମତଳ ହୋଇଯାଉଥିଲା । ରାକ୍ଷସ ଝିଟିପିଟି ଚାଲିଥିଲା

ରାଜରାସ୍ତା ଉପରେ, ତା'ପଛରେ ଭୟଙ୍କର ମାରଣାସ୍ତ୍ର ମାନ ଧରି ପୋଲିସ୍ ବାହିନୀ, ମିଲିଟାରୀ ଫୋର୍ସ ଇତ୍ୟାଦି । ତା'ପଛରେ ଲକ୍ଷଲକ୍ଷ ଲୋକ । ରାସ୍ତା ଉପରେ ଅସଂଖ୍ୟ ଟ୍ରାମ୍, ବସ୍, କାର୍ ଆଦି ପିଲାଙ୍କ ଭଙ୍ଗା ଖେଳନା ପରି ପଡ଼ି ରହିଥିଲା ।

ଗୋଟିଏ ଦୋ-ଛକି ରାସ୍ତାରେ ସେ ବିଶାଳ ପ୍ରାଣୀଟା ବାଟ ଭାଙ୍ଗି ଗୋଟେ ବଡ଼ ଗଳି ଭିତରେ ପଶିଗଲା । ତା' ଶରୀରଟା ଗୋଟେ ବହୁତଳ ପ୍ରାସାଦ ଆଢୁଆଳରେ ଲୁଚିଗଲା । କିନ୍ତୁ ଲାଞ୍ଜଟା ପ୍ରାୟ ପଚାଶ ମିଟର ପର୍ଯ୍ୟନ୍ତ ଲମ୍ବି ରହିଥିଲା ରାସ୍ତା ଉପରେ । ଠିକ୍ ଏତିକି ବେଳେ ଲାଞ୍ଜ ଉପରେ ଆକ୍ରମଣ ଆରମ୍ଭ କରିଦେଲେ ସୁରକ୍ଷା ବାହିନୀ ଦଳ । ଶକ୍ତିଶାଳୀ ମେସିନ୍‌ଗନ୍‌ର ବାରମ୍ବାର ଆଘାତରେ ଲାଞ୍ଜଟା ତା'ର ମୂଳରୁ ଛିଣ୍ଡିଗଲା । ଛିଣ୍ଡା ଲାଞ୍ଜଟା ବୁଢ଼ାସାପ ପରି ରାସ୍ତା ଉପରେ ପଡ଼ି ଛଟପଟ ହେବାକୁ ଲାଗିଲା । ତେଣେ ସେ ରାକ୍ଷସ ଜୀବଟା ତୀବ୍ରବେଗରେ ଯୁଆଡ଼େ ନାଇଁ ସେଆଡ଼େ ଦଉଡ଼ିବାକୁ ଲାଗିଲା । ଭୟ ପାଇ ବାରମ୍ବାର ସେ କୌଣସି ଉଚ୍ଚ ଜାଗାକୁ ଚଢ଼ିବାକୁ ଚେଷ୍ଟା କରୁଥାଏ । ହେଲେ ସହରରେ ଏପରି କୌଣସି ମଜଭୁତ୍ ଟାୱାର କି ଅଟ୍ଟାଳିକା ନଥିଲା, ଯିଏ ସେ ମହାକାୟ ପ୍ରାଣୀର ଓଜନ ସମ୍ଭାଳି ପାରିବ । ଗୋଟି ଗୋଟି ହୋଇ ସବୁ ଟଳି ପଡୁଥାଏ ।

ପ୍ରଫେସର ରବିରତ୍ନମ୍ ଏଠାରେ ଗୋଟେ ବିଶେଷ କଥା ଲକ୍ଷ୍ୟକଲେ । ଝିଟିପିଟି ଉପରେ ଯଦି କୌଣସି ଶତ୍ରୁ ଆକ୍ରମଣ କରେ, ସେ ତା' ଲାଞ୍ଜଟିକୁ ପ୍ରଥମେ ଛିଣ୍ଡାଇଦିଏ ଏବଂ ନିଜେ ରକ୍ଷା ପାଇଯାଏ । ଦ୍ୱିତୀୟ କଥା ହେଲା, ଭୟ ପାଇଲେ ସେ କୌଣସି ଉଚ୍ଚ ଜାଗାକୁ ଚଢ଼ିବାକୁ ଚେଷ୍ଟାକରେ । ଏ ରାକ୍ଷସ ଝିଟିପିଟିର ଉଭୟ ଲକ୍ଷଣ ଠିକ୍ ଘର ଝିଟିପିଟି ପରି ! ତା'ହେଲେ... !

କିଛି ଗୋଟେ ଭାବିବାକୁ ଲାଗିଲେ ପ୍ରଫେସର । ଚିନ୍ତା ଓ ଉଦ୍‌ବେଗରେ କପାଳ ତାଙ୍କ ଘର୍ମାକ୍ତ ହୋଇ ଉଠିଲା । ତା'ପରେ ହଠାତ୍ ସେ ଉଠିଲେ । ବ୍ରସ୍ ପ୍ରସ୍ ଫୋପାଡ଼ି ଦେଇ, ସେମିତି ଅଧାନଙ୍ଗଳା ଅବସ୍ଥାରେ ଗାଡ଼ିଟା ଧରି ବାହାରିପଡ଼ିଲେ ଲାବୋରାଟେରୀ ଅଭିମୁଖେ । ଲାବୋରାଟେରୀ ପାଖରେ ପହଞ୍ଚି ସେ ଯେଉଁ ଦୃଶ୍ୟ ଦେଖିଲେ, ଆଖିକୁ ବିଶ୍ୱାସ କରିପାରିଲେନି । ଅନ୍ୟ କେହି ହୋଇଥିଲେ ଦୁଃଖରେ ପାଗଳ ହେଇଯିବା କଥା । ପ୍ରଫେସର କିନ୍ତୁ ଆନନ୍ଦରେ ଚିହାରକରି ପିଲାଙ୍କ ପରି ଡେଇଁବାକୁ ଲାଗିଲେ । ଅଥଚ ଆଶ୍ଚର୍ଯ୍ୟର କଥା, ତାଙ୍କର ଏଡ଼େବଡ଼ ବିଜ୍ଞାନ ପ୍ରୟୋଗଶାଳାର ଅଧାଅଧି ଅଂଶ ଭୁଶୁଡ଼ି ପଡ଼ିଥିଲା । ଛାତଟା ଉଡି ଯାଇଥିଲା । ପ୍ରଫେସର ଖୁସିରେ ଡେଇଁ ଡେଇଁ ହାଲିଆ ହେଇଗଲେ । ତା'ପରେ ସେ ଗୋଟେ ଭଙ୍ଗା ଇଟା ଗଦା ଉପରେ ବସିଲେ । ଭାବିଲେ,

ଏତେ ଦୀର୍ଘ ଗବେଷଣା ତାଙ୍କର ଶେଷରେ ସଫଳ ହେଲା । ହେଲେ ତା'ର ଫଳାଫଳ ଏମିତି ଭୟାନକ ହେବ ବୋଲି ସେ କଳ୍ପନା ମଧ୍ୟ କରିନଥିଲେ । ସେ ଗବେଷଣା କରୁଥିଲେ, କେତେକ ରାସାୟନିକ ମିଶ୍ରଣରୁ ଏପରି ଏକ ପଦାର୍ଥ ସୃଷ୍ଟି କରିବେ, ଯାହାକୁ କୌଣସି ପ୍ରାଣୀ ଦେହରେ ପ୍ରୟୋଗ କରିବା ମାତ୍ରେ, ସେ ତା' ମୂଳ ଶରୀରଠାରୁ ଲକ୍ଷାଧିକ ଗୁଣ ବଡ଼ ହୋଇଯିବ । ତାଙ୍କର ଏ ଅଦ୍ଭୁତ ଗବେଷଣା ଅନେକ ଦିନ ଧରି ଚାଲିଥିଲା । ଗତ ରାତିରେ ସେ ଏହାର ଶେଷ ଦ୍ରବଣ ପ୍ରସ୍ତୁତ କରିଥିଲେ । କେବଳ ପ୍ରୟୋଗ ଏବଂ ପରୀକ୍ଷା ବାକି ଥିଲା । ଦ୍ରବଣତକ ସେ ଗୋଟେ ଖୋଲାପାତ୍ରରେ, ଟେବୁଲ ଉପରେ ରଖି ଦେଇ ଯାଇଥିଲେ । ଏହା ତାଙ୍କର ଖାମଖିଆଲୀ ସ୍ୱଭାବ । ସେ ଚିନ୍ତା କରିପାରିଲେନି ଯେ, ଯଦି ଗବେଷଣା ସଫଳ ହୋଇଥାଏ ଏବଂ ସେଥିରୁ ଗୋଟେ ଦାନା ଯଦି ବି ପିମ୍ପୁଡ଼ିଟିଏ ଖାଇଦିଏ–ସେ ହାତୀପରି ଗୋଟେ ବିଶାଳ ପ୍ରାଣୀରେ ପରିଣତ ହୋଇଯିବ । ...ବିଡ଼ମ୍ବନାର କଥା, ତାହା ହିଁ ହେଇଛି । ତାଙ୍କ ବହିଥାକରେ ରହୁଥିବା ଝିଟିପିଟିଟା ଟେବୁଲ ଉପରକୁ ଆସି ଦ୍ରବଣରୁ କିଛି ଚାଟିଦେଇଛି ଏବଂ ପରିଣତ ହୋଇଯାଇଛି ଡାଇନୋସର ଜାତୀୟ ଏକ ବିଶାଳ ପ୍ରାଣୀରେ !

...କିନ୍ତୁ ଏତେବଡ଼ ବିପର୍ଯ୍ୟୟ ପାଇଁ ଦାୟୀ କିଏ ? ତାଙ୍କ ଅପରିଣାମଦର୍ଶୀ ଗବେଷଣା ଏବଂ ଖାମ୍‌ଖିଆଲୀ ନୀତି ହିଁ ଏହାର ମୁଖ୍ୟ କାରଣ । ପ୍ରଫେସର ମନକୁ ମନ କହି ଲାବ୍ରୋଟାରୀର ଭଙ୍ଗା ଛାତଆଡ଼େ ଅନାଇଲେ । ସେ ଜାଣିପାରିଲେ, ଦ୍ରବଣତକ ଖାଇବା ପରେ ଝିଟିପିଟିଟା ହଠାତ୍ ଗୋଟେ ପାହାଡ଼ ଆକାର ଜନ୍ତୁରେ ପରିଣତ ହୋଇଯାଇଛି । ତା'ପରେ ସେ ଛାତ ଫଟେଇ ବିଜ୍ଞାନଗାର ଭିତରୁ ବାହାରିଛି ଏବଂ ମାଡ଼ିଯାଇଛି ସହର ଆଡ଼କୁ ।

ସାମାନ୍ୟ ଝିଟିପିଟିଟେ ପାଇଁ କଲିକତା ସହରରେ ଯେଉଁ ଧ୍ୱଂସର ଲୀଳା ଚାଲିଛି, ସେକଥା ଭାବିବା ବେଳକୁ ମୁଣ୍ଡ ତାଙ୍କର ଘୂରାଇବାକୁ ଲାଗିଲା । ସେ ଚିନ୍ତାକଲେ, ବିଜ୍ଞାନ ଗବେଷଣାର ଫଳ ଏପରି ଯଦି ମଣିଷ ଜାତିକୁ ଧ୍ୱଂସ ଆଡ଼କୁ ଟାଣିନେବ, ତା'ହେଲେ ଆଧୁନିକ ବିଜ୍ଞାନ ଉପରୁ ଲୋକଙ୍କ ଆସ୍ଥା ତୁଟିଯିବ । କିନ୍ତୁ ଏମିତି କାଣ୍ଡ ଘଟିବ ବୋଲି ସେ' ତ ଜାଣିନଥିଲେ ।

ଯା'ହେବାର ହେଲାଣି, ଏବେ ସେ ରାକ୍ଷସ ଝିଟିପିଟି କବଳରୁ ସହରକୁ ରକ୍ଷାକରିବା ଉପାୟ କ'ଣ ? ଏହା ଭାବି ସେ ମୁଣ୍ଡରେ ହାତ ଦେଇ କିଛି ସମୟ ବସିଲେ । ତା'ପରେ ଉଠି ସେ ଭଙ୍ଗା ଇଟା ପଥର ଆଡ଼େଇ କିଛି ଗୋଟେ ଖୋଜିବାକୁ ଲାଗିଲେ । ବହୁତ ପରିଶ୍ରମ

କରିବା ପରେ ଭଙ୍ଗା ଚଟାଣ ତଳୁ ସେ ପାଇଲେ ଗୋଟେ ଛୋଟ ପଲିଥିନ୍ ମୁଣି । ତା' ଭିତରେ ମହୁପରି କିଛି ଗାଢ଼ ତରଳ ପଦାର୍ଥ ଥିଲା । ମୁଣିଟା ଅକ୍ଷତ ଅବସ୍ଥାରେ ଥିଲା । ପ୍ରଫେସରଙ୍କ ମୁହଁ ପ୍ରସନ୍ନ ଦେଖାଗଲା । ପଲିଥିନ୍ ମୁଣିକୁ ସେ ନିଜ ବରମୁଡ଼ାର ପକେଟ୍ ଭିତରେ ପୂରାଇ, ସେମିତି ଅଧାନଙ୍ଗଳା ଅବସ୍ଥାରେ ହିଁ ଯାଇ ଗାଡ଼ିରେ ବସିଲେ । ଗାଡ଼ି ପବନ ବେଗରେ ଛୁଟି ଚାଲିଲା ସହର ଅଭିମୁଖେ ।



ମାତ୍ର କୋଡ଼ିଏ ମିନିଟ୍ ଭିତରେ ସେ ଯାଇ ପହଞ୍ଚିଗଲେ ସହରର ସେଇ ଆତଙ୍କଗ୍ରସ୍ତ ଇଲାକାରେ । ଯେଉଁ ରାସ୍ତା ଦେଇ ସେ ଯାଉଥିଲେ, ଦୁଇ ପାଖରେ ତା'ର ଅନେକ ଧୂଳିସାତ୍ ଘରଦ୍ୱାର । ଶହ ଶହ କ୍ଷତବିକ୍ଷତ ମଣିଷ । ଆର୍ତ୍ତ ଚିହାର ଶୁଭୁଥିଲା ଚାରିଆଡୁ । ଏ ଦୃଶ୍ୟ ଦେଖି ପ୍ରଫେସରଙ୍କ କଲିଜା ଥରିଗଲା । କିଛି ଦୂରରେ ଅନେକ ଲୋକ ଠିଆ ହୋଇଥିବାର ସେ ଦେଖିବାକୁ ପାଇଲେ । ଆଗରେ ରାସ୍ତା ଉପରେ ଗୋଟେ ବିଶାଳ ଗଛ-ଗଣ୍ଡି ପଡ଼ିଥିଲା । ପିଲାମାନେ ତା' ଉପରେ ଚଢ଼ି ଖୁସିରେ ନାଚୁଥିଲେ । ପ୍ରଫେସର ଗାଡ଼ି ଅଟକାଇ ଦେଖିଲେ, ସେଇଟା ଗଛ ଗଣ୍ଡି ନୁହଁ; ରାକ୍ଷସ ଝିଟିପିଟିର ଛିଣ୍ଡି ପଡ଼ିଥିବା ଲାଞ୍ଜଟା । ସେ ଆଉ ସେଠାରେ ନ ଅଟକି ଆଗକୁ ଚାଲିଲେ ।

ଦୂରରୁ ଶୁଣାଗଲା ଲୋକମାନଙ୍କ ଆକୁଳ ଚିତ୍କାର । ଗୁଳିଗୋଳାର ଗର୍ଜନ । ଗାଡ଼ି ତାଙ୍କର ସେହି ଦିଗରେ ହିଁ ମାଡ଼ି ଚାଲିଲା । ସେ ଦେଖିଲେ ହଜାର ହଜାର ଲୋକ ପାଟିତୁଣ୍ଡ କରି ମାଡ଼ି ଆସୁଛନ୍ତି । ସେମାନଙ୍କ ପଛେ ପଛେ ବିଶାଳ ଜାହାଜ ପରି ଗୋଟେ ଜନ୍ତୁ । ଏ ଦୃଶ୍ୟ ଦେଖି ସେ ସ୍ତବ୍ଧ ହୋଇଗଲେ । ସେ ରାକ୍ଷସ ଜୀବଟା ତା' ବିଶାଳକାୟ ପଞ୍ଝା ବଢ଼ାଇ ଦ୍ରୁତ ବେଗରେ ମାଡ଼ି ଆସୁଥିଲା । ଲୋକେ ପ୍ରାଣ ଭୟରେ ଦଉଡୁଥିଲେ । ସେ ଭିଡ଼ ଭିତରେ ପଶି ଯାଇଥିଲା ପ୍ରଫେସରଙ୍କ ଗାଡ଼ି । ସେଠାରୁ ସେ ଗାଡ଼ିକୁ ନା ପଛେଇ ନେଇ ପାରୁଥିଲେ ନା ବୁଲାଇ ନେଇ ପାରୁଥିଲେ । ଗାଡ଼ି ଅଟକିଗଲା ଏବଂ ତାଙ୍କ ଆଡ଼କୁ ମାଡ଼ି ଆସୁଥିଲା ସେ ରାକ୍ଷସ ଝିଟିପିଟି । ଆଉ ମାତ୍ର କୋଡ଼ିଏ କି ପଚିଶି ମିଟର ବ୍ୟବଧାନ । ହଠାତ୍ ଗୋଟେ ପ୍ରକାଣ୍ଡ ଜିଭ ଆସି ଆଖିପିଛୁଳାକେ ଗାଡ଼ି ସହିତ ତାଙ୍କୁ ଟେକିନେଲା । ଗାଡ଼ିର ଧ୍ୱନି ସହିତ ଜଣେ ମଣିଷର ଆର୍ତ୍ତ ଚିତ୍କାର ପବନରେ ମିଳାଇଗଲା । ଦୂରରୁ ଲୋକେ ଦେଖିବାକୁ ପାଇଲେ, ସେ ରାକ୍ଷସ ଜୀବର ପର୍ବତ ଗହ୍ୱର ପରି ପାଟି ଭିତରେ ଦିଆସିଲି ଖୋଳ ପରି ଗାଡ଼ିଟା ପଶିଗଲା ।

ପ୍ରଫେସରଙ୍କ ଭାଗ୍ୟ ଭଲ । ଲୁହାରେ ତିଆରି ଗାଡ଼ିଟା ଗିଳିବାକୁ ରାକ୍ଷସଟା ପସନ୍ଦ କଲାନି ବୋଧେ । ରାଗରେ ସେ ମୁହଁକୁ ଛିଞ୍ଚାଡ଼ି ଦୂରକୁ ଛାଟିଦେଲା । ଗାଡ଼ିଟା ପଡ଼ିଲା ଯାଇ ତିରିଶି ମିଟର ଦୂରରେ । ପ୍ରଫେସରଙ୍କୁ ଈଶ୍ୱର ବଞ୍ଚାଇଦେଲେ । ସେ କଷ୍ଟେମଷ୍ଟେ ଗାଡ଼ିରୁ ବାହାରିଲେ । ଜନ୍ତୁଟା ଦୂରକୁ ଚାଲି ଯାଉଥିଲା । ତାଙ୍କର ଏ ଅବସ୍ଥା ଦେଖି ପୋଲିସ ଏବଂ ଜନସାଧାରଣ ତାଙ୍କୁ ଘେରିଗଲେ ।

ପୋଲିସ ଡି.ଜି. ସାହେବ ତାଙ୍କୁ ଚିହ୍ନି ପାରିଲେ । ଆଶ୍ଚର୍ଯ୍ୟରେ ପଚାରିଲେ, ''ଆରେ...ପ୍ରଫେସର ରବିରତ୍ନମ୍ ! ଆପଣ ! ଆପଣ ଏମିତି ପାଗଳାମି କାହିଁକି କରୁଥିଲେ ? ଭାଗ୍ୟ ଭଲ, ଗାଡ଼ି ଭିତରେ ବସିଥିଲେ ବୋଲି ବଞ୍ଚିଗଲେ, ନ ହେଲେ ଏବେ ରାକ୍ଷସ ପେଟରେ ଥାଆନ୍ତେ ।''

ପ୍ରଫେସର ହାତଯୋଡ଼ି କହିଲେ–''ବରଂ ଭଲ ହୁଅନ୍ତା, ସାର୍ ।''

ଡି.ଜି. ବିସ୍ମୟ ପ୍ରକାଶ କରି କହିଲେ–''ଆପଣ ଏମିତି କ'ଣ କହୁଛନ୍ତି ? ଏ ରାଷ୍ଟ୍ରର ଜଣେ ସ୍ୱନାମଧନ୍ୟ ବୈଜ୍ଞାନିକ ଆପଣ ।''

''ହଁ ସାର୍, ଆଜି ଆପଣ ଏ ସହରରେ ଯେଉଁ ବିପର୍ଯ୍ୟୟ ଦେଖୁଛନ୍ତି, ତାହା ମୋ ଗବେଷଣାର ହିଁ ଫଳ । ମୋ ଅପରିଣାମଦର୍ଶିତା ଏବଂ ଅସତର୍କତା ଯୋଗୁଁ ହିଁ ମୋ ଗବେଷଣାଗାରରେ ଜନ୍ମ ନେଇଛି ଏ ଭୟାନକ ଜୀବ । ଏ ଦୁର୍ଘଟଣା ପାଇଁ ମୁଁ ହିଁ ଦାୟୀ ।''

ଡି.ଜି. ସାହେବ ଭ୍ରୂକୁଟି କୁଞ୍ଚନ କରି ତାଙ୍କ ଆସିଷ୍ଟାଣ୍ଟଙ୍କୁ ଆସ୍ତେ କହିଲେ–''ପ୍ରଫେସର ରବିରତ୍ନମ୍ ଯା ଭିତରେ କେବେଠୁଁ ପାଗଳ ହେଇଗଲେଣି, ମୁଁ ଜାଣିନି ! ଦେଖୁନ, ସେ କ'ଣ କହୁଛନ୍ତି ଆଉ ତାଙ୍କ ବେଶଭୂଷାକୁ ଟିକେ ଦେଖତ !''

ଆସିଷ୍ଟାଣ୍ଟ ଉତ୍ତର ଦେଲେ, ''ସାର୍ ମୁଁ ଶୁଣିଛି, ବଡ଼ ବଡ଼ ବୈଜ୍ଞାନିକମାନଙ୍କ ମୁଣ୍ଡ କୁଆଡ଼େ ନବେ ପ୍ରତିଶତ ପାଗଳ; କିନ୍ତୁ ସେମାନଙ୍କ ପ୍ରଳାପ ସବୁବେଳେ ମୂଲ୍ୟବାନ୍ ।''

ପ୍ରଫେସର ପୁଣି କହିଲେ–''ଡି.ଜି. ସାହେବ, ଆପଣଙ୍କ ପରି ଜଣେ ଦାୟିତ୍ୱସମ୍ପନ୍ନ ଅଫିସର ଅନ୍ତତଃ ମୋ କଥାକୁ ବିଶ୍ୱାସ କରିବା ଉଚିତ । ଏବେ ଦୟାକରି ମୋ ଅନୁରୋଧ ରଖନ୍ତୁ । ଏ ଲୋକମାନଙ୍କୁ ଅଟକାନ୍ତୁ । ସେ ବିଚରା ଜନ୍ତୁଟି ଉପରେ ହେଉଥିବା ଆକ୍ରମଣକୁ ବନ୍ଦ କରାନ୍ତୁ । ଗୁଳିଗୋଳାର ଶବ୍ଦ ଏବଂ ଗୁଡ଼ାଏ ଲୋକ ଦେଖି ଜନ୍ତୁଟା ହୁରୁଡ଼ି ଯାଇଛି । ତାକୁ ଟିକିଏ ଶାନ୍ତିରେ ଛାଡ଼ି ଦିଅନ୍ତୁ । ଦେଖିବେ, ସେ ଆମର କିଛି ଅନିଷ୍ଟ କରିବନି । ଦେଖନ୍ତୁ... ସେ କେମିତି ଦୂରକୁ ଦୂରକୁ ଚାଲିଯାଉଛି । କୁଆଡ଼େ ଯାଉଛି କେବଳ ଧ୍ୟାନ ରଖନ୍ତୁ । ଆଗରେ ଯେଉଁ ଦୁଇଟା ଲଣ୍ଡା ପାହାଡ଼ ଦେଖାଯାଉଛି ଏବଂ ମଝିରେ ପାଣିଧାରଟିଏ ଖସୁଛି, ସେ ସେଇ ଆଡ଼କୁ ହିଁ ଯାଉଚି । ସେଠି ବୋଧେ ସେ ଟିକିଏ ବିଶ୍ରାମ ନେବ ।''



ପ୍ରଫେସରଙ୍କ ଅନୁମାନ ଠିକ୍ ଥିଲା । ରାକ୍ଷସ ଝିଟିପିଟି ସେଠାକୁ ଯାଇ କିଛି ସମୟ ଠିଆ ହେଲା । ତା'ପରେ ସେ ଗୋଟେ ବିଚିତ୍ର ଗର୍ଜନ କଲା । ଲୋକେ ଏପର୍ଯ୍ୟନ୍ତ ରାକ୍ଷସର

ଏ ଗର୍ଜନ ଶୁଣିନଥିଲେ । ତେଣୁ ଅଧିକ ଆତଙ୍କିତ ହୋଇପଡ଼ିଲେ । ପ୍ରଫେସର ବୁଝାଇଲେ, ''ଦେଖ ଭାଇମାନେ, ବ୍ୟସ୍ତ ହେବା ଦରକାର ନାହିଁ । ଝିଟିପିଟିମାନେ ଅଣ୍ଡା ଦେବା ଆଗରୁ ଏପରି ଶବ୍ଦ କରିଥାନ୍ତି । ଏ ସେହି ଶବ୍ଦ । ଯାହା ଜଣାଯାଉଛି, ଜନ୍ତୁଟା ଏବେ ଅଣ୍ଡା ଦେବ ।''

ସତକୁସତ ସେ ବିଶାଳ ଝିଟିପିଟି ଭୀଷଣ ଗର୍ଜନ କରି ଅଣ୍ଡାଦେବା ଆରମ୍ଭ କଲା । ଆଗକୁ ଗଲେ ମରଣାନ୍ତକ ବିପଦ, ଜାଣି ସୁଦ୍ଧା ଲୋକେ କୌତୂହଳବଶତଃ ତା' ଅଣ୍ଡା ଦେବା ଦୃଶ୍ୟ ଦେଖିବା ପାଇଁ ମାଡ଼ି ଯାଉଥାନ୍ତି । ପୋଲିସ୍ ବହୁ ପରିଶ୍ରମ କରି ସେମାନଙ୍କୁ ଅଟକାଉ ଥାଏ । ପ୍ରାୟ ଅଧଘଣ୍ଟାଏ ଭିତରେ ଛୋଟ ଛୋଟ ମାର୍ବଲ ସ୍ତୁପ ପରି ତିନୋଟି ଅଣ୍ଡା ଦେଲା ଝିଟିପିଟି । ତା'ପରେ ସେ ଅଳସ ଗତିରେ ଆଗକୁ ଆଗକୁ ଚାଲିଲା ।

ଲୋକମାନଙ୍କୁ ଆଉ ଅଟକାଇ ହେଲାନି । ଅଣ୍ଡାଗୁଡ଼ିକ ପାଖରୁ ଦେଖିବା କୌତୂହଳ ଦମନ କରି ନପାରି ସେମାନେ ପୋଲିସ୍ କର୍ଡ଼ନ୍ ଭାଙ୍ଗି ଦୌଡ଼ିବାକୁ ଲାଗିଲେ । ସେତେବେଳକୁ ଜନ୍ତୁଟା ଅନେକ ଦୂରକୁ ଚାଲିଯାଇଥାଏ । ସେ ସମୁଦ୍ର ଆଡ଼କୁ ମୁହାଁଉଥିବା ଦେଖି ଡି.ଜି.ପି. ସାହେବ କହିଲେ–''ମନେ ହେଉଛି ଜନ୍ତୁଟା ସମୁଦ୍ର ଭିତରକୁ ଚାଲିଯିବ, ଆଉ ଫେରିବନି ।''

ପ୍ରଫେସର କହିଲେ–''ଆପଣଙ୍କ ଅନୁମାନ ପୂରାପୂରି ଭୁଲ୍ ଡି.ଜି.ପି. ସାହେବ । ଝିଟିପିଟି ଅଣ୍ଡା ଦେବା ପରେ କେବେହେଲେ ଭୁଲିଯାଏନି । ଦିନରେ ଅନ୍ତତଃ ଦୁଇ ଚାରିଥର ଆସି ସେ ତା' ଅଣ୍ଡାଗୁଡ଼ିକୁ ଚାଟି ଦେଇଯାଏ । ଏମିତି କରି ସେ ଅଣ୍ଡାଗୁଡ଼ିକୁ ଉଷୁମ ରଖେ । ଏ ମଧ୍ୟ ତାହାହିଁ କରିବାକୁ ପୁଣି ଏଠାକୁ ଆସିବ । କିନ୍ତୁ ସାର୍, ଦୟାକରି ଆପଣ ତା' ଉପରେ ଆଉ ଆକ୍ରମଣ କରନ୍ତୁ ନାହିଁ । କାରଣ ସେ ଯଦି ପ୍ରତିଆକ୍ରମଣ କରେ ଆମର ଆହୁରି ଅନେକ କ୍ଷତି ହୋଇପାରେ । ଡି.ଜି.ପି. ବିରକ୍ତି ପ୍ରକାଶ କରି କହିଲେ, ''ତା'ହେଲେ ଆପଣ କ'ଣ କହୁଛନ୍ତି ସହର ଭିତରେ ଏ ହିଂସ୍ର ରାକ୍ଷସଟାକୁ ମାଙ୍କଡ଼-ବିଲେଇ ପରି ଖୋଲା ଛାଡ଼ିଦେବା ? ସେ ଦୁନିଆ ସାରା ବୁଲି ବୁଲି ଅଣ୍ଡା ଦେବ ଓ ବଂଶ ବିସ୍ତାର କରି ଚାଲିଥିବ, ଆଉ ଆମେ ଚୁପ୍‌ଚାପ୍ ବସି ମଜା ଦେଖିବା ?''

ପ୍ରଫେସର କହିଲେ–''ନା ସାର୍, ଯାର ଗୋଟେ ସରଳ ସମାଧାନର ବାଟ ଅଛି । ଏଥିପାଇଁ ଆପଣ ଦୟାକରି ମୋତେ ସହାୟତା କରନ୍ତୁ । ଗୋଟେ ବଡ଼ ଟ୍ରକ୍,ଭାରୀ ଜିନିଷ ଉଠାଇବା ଗୋଟେ କ୍ରେନ୍, ଚାରିଜଣ ବଳୁଆ ଲୋକ ଏବଂ ଗୋଟେ ନିଶୁଣି, ଏତିକି ଜିନିଷ ମୋ ପାଇଁ ବ୍ୟବସ୍ଥା କରି ଦିଅନ୍ତୁ ।''

ଡି.ଜି.ପି. ପୁଣିଥରେ ବିରକ୍ତ ହୋଇ କହିଲେ–''କ'ଣ ଆପଣ ଏଠି ଗୋଟେ ସର୍କସ୍ ଦଳ ଆରମ୍ଭ କରିବେ ?''

"ସାର୍...ଏ ଥଟ୍ଟା କରିବା ସମୟ ନୁହେଁ କି ତର୍କବିତର୍କର ସମୟ ନୁହେଁ । ସେ ରାକ୍ଷସ ଜୀବଟା ଫେରିବା ଆଗରୁ ଆମେ କିଛି ଗୋଟେ କରିବାକୁ ପଡ଼ିବ । ଆପଣ ମୋ କଥା ଉପରେ ଭରସା ରଖନ୍ତୁ ଏବଂ ମୋତେ ସାହାଯ୍ୟ କରନ୍ତୁ ।"

ଡି.ଜି.ପି. କହିଲେ–"ହଉ, କ'ଣ କରୁଛ ଦେଖିବା ।"

ଡି.ଜି.ପି.ଙ୍କ ଆଦେଶ ମାତ୍ରେ ଟ୍ରକ୍, କ୍ରେନ୍ ଆଦି ବ୍ୟବସ୍ଥା ହୋଇଗଲା । ଚାରିଜଣ ବଳିଷ୍ଠ ପୋଲିସ୍ ଆସି ଠିଆହେଲେ ପ୍ରଫେସରଙ୍କ ଆଗରେ । ପ୍ରଫେସର କହିଲେ– "ଭାଇମାନେ, ଆମେ ଏ ଅଣ୍ଡାଗୁଡ଼ିକୁ ହାତରେ ଉଠାଇ ପାରିବାନି । ତେଣୁ ଆପଣମାନେ ଏଥିରୁ ଦୁଇଟି ଅଣ୍ଡାକୁ କ୍ରେନ୍‌ବୁମ୍ (ଓଜନ ଉଠାଉଥିବା ଯାନ୍ତ୍ରିକ ଲୀଭର)ରେ ବାନ୍ଧି ଟ୍ରକ୍ ଡାଲା ଉପରକୁ ଉଠାଇ ଦିଅନ୍ତୁ ।" ସେହି ପ୍ରଣାଳୀରେ ଅଣ୍ଡା ଦୁଇଟି ଟ୍ରକ୍ ଉପରକୁ ଉଠାଗଲା । ପ୍ରଫେସର ଟ୍ରକ୍ ଡ୍ରାଇଭରକୁ କହିଲେ–"ଭାଇ, ଏ ଅଣ୍ଡା ଦୁଇଟିକୁ ତୁମେ ବହୁତ ଦୂରକୁ ନେଇଯିବ । ନଈ କି ସମୁଦ୍ର ଭିତରେ ପକାଇ ନଷ୍ଟ କରିଦେବ । ହୁସିଆର, ତା' ଆଇଁଷିଆ ଗନ୍ଧ ଯେମିତି ଏ ଆଡ଼େ ନ ଆସେ ।" ଟ୍ରକ୍ ଚାଲିଗଲା । ରହିଲା କେବଳ ଗୋଟିଏ ଅଣ୍ଡା । ପ୍ରଫେସର ତା'ପରେ ନିଶୁଣିଟା ଧରି ସେ ଅଣ୍ଡା ପାଖକୁ ଗଲେ । ଅଣ୍ଡାର ଉଚ୍ଚତା ଥିଲା–ପ୍ରଫେସରଙ୍କ ଉଚ୍ଚତାର ପ୍ରାୟ ଦେଢ଼ଗୁଣ ! ସେ ତା' ଉପରେ ଚଢ଼ିବାକୁ ଚାହୁଁଥିଲେ । ତେଣୁ ନିଶୁଣିକୁ ଅଣ୍ଡା ଉପରେ ଆଉଜେଇ ରଖିଲେ । ଅଣ୍ଡାର ପିଚ୍ଛିଳ ପୃଷ୍ଠଭାଗ ହେତୁ ନିଶୁଣି ବାରମ୍ବାର ଖସିଲା । ଦୁଇଜଣ ଲୋକ ଯାଇ ନିଶୁଣିକୁ ଧରିଲେ । ଏଥର ପ୍ରଫେସର ଆସ୍ତେକରି ଚଢ଼ିଲେ । ସେ ଅଣ୍ଡା ଉପରକୁ ଚଢ଼ିଗଲେ ଏବଂ ଚାରିଆଡ଼କୁ ନିରୀକ୍ଷଣ କଲେ ।

ସେ ଅଧାନଙ୍ଗଳା ପାଗଳ ବୈଜ୍ଞାନିକଟା କ'ଣ କରିବାକୁ ଚାହୁଁଛି । ସେ କଥା ନା ଡି.ଜି.ପି. ବୁଝି ପାରୁଥିଲେ ନା ଜନସମୂହ ! ସମସ୍ତେ କିନ୍ତୁ ଉଦ୍‌ଗ୍ରୀବ ହୋଇ ଚାହିଁ ରହିଥିଲେ ତାଙ୍କ କାର୍ଯ୍ୟକଳାପକୁ ।

ପ୍ରଫେସର ତାଙ୍କ ବରମୁଡ଼ାର ପକେଟ୍ ଭିତରୁ ବାହାର କଲେ ସେ ପଲିଥିନ୍ ମୁଣିଟା । ମୁଣି ଖୋଲି ତା' ଭିତରେ ଥିବା ତରଳ ପଦାର୍ଥକୁ ଅଣ୍ଡା ଉପରେ ବୋଳିବାକୁ ଲାଗିଲେ ।

ଠିକ୍ ଏତିକିବେଳେ ଦୂରରୁ ଶୁଣାଗଲା ସେ ରାକ୍ଷସ ଜୀବର ଭୀଷଣ ଗର୍ଜନ । ମନେହେଲା, ପୁଣି ସେ ଜନ୍ତୁଟା ଏ ଆଡ଼ିକି ଆସୁଛି । ଲୋକେ ଆତଙ୍କିତ ହୋଇ ଛତ୍ରଭଙ୍ଗ ଦେଲେ । ପୋଲିସ୍‌ବାଲା ସତର୍କ ହୋଇଗଲେ । ପ୍ରଫେସର କିନ୍ତୁ ଅବିଚଳିତ ଭାବେ ଅଣ୍ଡା ଉପରେ ବସି ତରଳ ପଦାର୍ଥ ବୋଳି ଚାଲିଥାନ୍ତି ।

ସେ ରାକ୍ଷସ ଜୀବ କ୍ରମଶଃ ପାଖକୁ ଆସୁଥିଲା । ତା' ପାଦ ଶବ୍ଦରେ ଭୂମି ଦୁଲୁକିବାକୁ ଲାଗିଲା । ସେ ଝଡ଼ ବେଗରେ ମାଡ଼ି ଆସୁଥିଲା । ତା' ଭୟଙ୍କର ରୂପ ଓ କାନଫଟା ଗର୍ଜନରେ ପୋଲିସ୍‌ବାଲା ମଧ୍ୟ ପଛୁଆ ଦଉଡ଼ିବାକୁ ଆରମ୍ଭ କଲେ । ଦେଖୁ ଦେଖୁ ପଡ଼ିଆ ଜନଶୂନ୍ୟ । ସେଠାରେ ରହିଗଲେ କିନ୍ତୁ ଜଣେ ଲୋକ । ଅଣ୍ଡା ଉପରେ ବସିଥିବା ବିଶିଷ୍ଟ ବୈଜ୍ଞାନିକ ପ୍ରଫେସର ରବିରତ୍ନମ୍ ।



ରାକ୍ଷସ ଝିଟିପିଟି ପହଞ୍ଚିଲା ତା' ଅଣ୍ଡା ପାଖରେ ଏବଂ ଉପରେ ବସିଥିବା ମଣିଷଟିକୁ ମଶା ଟୁଙ୍କିବା ପରି ଗୋଟେ ଝାମ୍ପରେ ଗିଳି ପକାଇଲା । ତା' ପରେ ସେ ଅଣ୍ଡାଟିକୁ ଚାଟିବା

ଆରମ୍ଭ କଲା । ବାରମ୍ବାର ଚାଟିବାକୁ ଲାଗିଲା ତା' ଉପରେ ବୋଳା ହୋଇଥିବା ତରଳ ପଦାର୍ଥକୁ । ଆଶ୍ଚର୍ଯ୍ୟ ! ସମସ୍ତେ ହତବମ୍ଭ ହୋଇ ଦୂରରୁ ଅନାଇ ରହିଥାନ୍ତି । ଦେଖୁ ଦେଖୁ ଜନ୍ତୁଟା ସେଠାରୁ କୁଆଡ଼େ ଅଦୃଶ୍ୟ ହେଇଗଲା ! କୁଆଡ଼େ ଗଲା କେହି ଜାଣି ପାରିଲେନି । ଏମିତି ଗୋଟେ ଘଟଣା ଘଟିବ ବୋଲି କେହି କଳ୍ପନା ବି କରିନଥିଲେ । ହଠାତ୍ ଆଖି ଆଗରୁ ପାହାଡ଼ଟାଏ ଅଦୃଶ୍ୟ ହୋଇଯିବା କିମ୍ବା ପବନରେ ମିଳେଇଯିବା କେବେ ସମ୍ଭବ ? କିନ୍ତୁ ଏ ଘଟଣା ଲୋକେ ନିଜ ଆଖିରେ ଦେଖି ବିଶ୍ୱାସ କରିବାକୁ ବାଧ ହେଲେ । ପୋଲିସ୍ କର୍ଡ଼ନ୍ ଭାଙ୍ଗି ଅଣ୍ଡା ଚାରିପଟେ ପୁଣି ସେମାନେ ଘେରିଗଲେ ।

ଠିକ୍ ସେତିକିବେଳେ ଗୋଟେ ଛୋଟ ଲାଞ୍ଜଖଣ୍ଡିଆ ଝିଟିପିଟି ଅଣ୍ଡାତଳୁ ବାହାରି ପାଖ ବୁଦା ଭିତରେ ଲୁଚିଗଲା । ଏ ଘଟଣାଟି ଘଟିଗଲା ସମସ୍ତଙ୍କ ଅଲକ୍ଷ୍ୟରେ । ଲୋକେ ଭାବୁଥିଲେ, ଏତେବଡ଼ ରାକ୍ଷସକାୟ ଜନ୍ତୁଟା ସେ ପାଗଳ ପ୍ରଫେସରକୁ ଗିଳିଦେଲା, ତା' ପରେ ଅଣ୍ଡା ଉପରେ ଲାଗିଥିବା ତରଳ ପଦାର୍ଥକୁ ଚାଟିଲା, ତା' ପରେ ହଠାତ୍ କୁଆଡ଼େ ଅଦୃଶ୍ୟ ହୋଇଗଲା... ? ପୋଲିସ୍ ଡି.ଜି. ସାହେବ ମଧ୍ୟ ତାହା ହିଁ ଭାବୁଥାନ୍ତି ।

ସେମାନେ କୁଆଡୁ ବୁଝିବେ ଯେ–ଏହି ବୈଜ୍ଞାନିକଙ୍କ ଖିଆଲି ଗବେଷଣା ଯେପରି ସେ ରାକ୍ଷସ ଝିଟିପିଟିକୁ ଜନ୍ମ ଦେଇଥିଲା । ତାକୁ ପୂର୍ବ ଅବସ୍ଥାକୁ ଫେରାଇ ଆଣିବା ତଥ୍ୟ ମଧ୍ୟ ସେ ଆବିଷ୍କାର କରି ରଖିଥିଲେ । ଶେଷ ମୁହୂର୍ତ୍ତରେ ଅଣ୍ଡା ଉପରେ ଯେଉଁ ଦ୍ରବଣ ସେ ବୋଳିଥିଲେ, ତାହା ଚାଟିବା ଦ୍ୱାରା ରାକ୍ଷସ ଝିଟିପିଟି ପୁଣି ତା' କ୍ଷୁଦ୍ର ଶରୀର ଫେରି ପାଇଥିଲା । କିନ୍ତୁ ସେତେବେଳକୁ ପ୍ରଫେସର ତା' ପେଟ ଭିତରେ ନିଶ୍ଚିହ୍ନ ହୋଇଯାଇଥିଲେ ।

ବିଶିଷ୍ଟ ରସାୟନ୍‌ବିତ୍ ପ୍ରଫେସର ରବିରତ୍ନମ୍‌ଙ୍କ ମୃତ୍ୟୁ ସହିତ ତାଙ୍କ ଅଦ୍ଭୁତ ଗବେଷଣାର ରହସ୍ୟମୟ ସୂତ୍ର ଏବଂ ରାସାୟନିକ ମିଶ୍ରଣର ତଥ୍ୟ ସବୁଦିନ ପାଇଁ ରହସ୍ୟ ହୋଇ ରହିଗଲା ।



# ମେଜିକ୍ ମେସିନ୍

ପ୍ରଫେସର ଆନନ୍ଦକୁମାର ଥିଲେ ଜଣେ ପ୍ରଖ୍ୟାତ ବୈଜ୍ଞାନିକ । ସେ କୌଣସି ନିର୍ଦ୍ଦିଷ୍ଟ ବିଷୟ ଉପରେ ବହୁତ ବର୍ଷ ଧରି ଗବେଷଣା ଚଳାଇଥିଲେ । ଦୀର୍ଘ ସତରବର୍ଷ ଗବେଷଣା କରିବା ପରେ ସେ ଉଦ୍ଭାବନ କଲେ ଗୋଟେ ଅଦ୍ଭୁତ ଯନ୍ତ୍ର । ସତରେ ସେ ଯନ୍ତ୍ରଟାର ଥିଲା ଅଲୌକିକ ଶକ୍ତି ! ଲୋକେ କିନ୍ତୁ ତାଙ୍କ ଉଦ୍ଭାବନକୁ ସହଜରେ ବିଶ୍ୱାସ କରିପାରିଲେନି । ତାଙ୍କ ବିଜ୍ଞାନ-ତଥ୍ୟକୁ ମଧ୍ୟ ବୁଝିବା ସମସ୍ତଙ୍କ ପକ୍ଷେ ସମ୍ଭବ ନଥିଲା ।

ବୈଜ୍ଞାନିକ ଦିନେ ସାମ୍ବାଦିକମାନଙ୍କୁ ଡକାଇଲେ । ତାଙ୍କ ଉଦ୍ଭାବିତ ଯନ୍ତ୍ରଟିକୁ ସେମାନଙ୍କୁ ଦେଖାଇଲେ । ତା'ର କାର୍ଯ୍ୟଦକ୍ଷତା ସମ୍ପର୍କରେ ବୁଝାଇଲେ । ସେ ସମ୍ପର୍କରେ ପତ୍ରପତ୍ରିକାରେ ଛାପିବାପାଇଁ ସେମାନଙ୍କୁ ଅନୁରୋଧ କଲେ ।

ଦୁଃଖର କଥା, ପରଦିନ ସମ୍ବାଦ-ପତ୍ର ମାନଙ୍କରେ ବଡ଼ବଡ଼ ଅକ୍ଷରରେ ପ୍ରକାଶ ପାଇଲା, ''ଦୀର୍ଘକାଳ ଗବେଷଣା କରି କରି 'ପ୍ରଫେସର ଆନନ୍ଦ କୁମାର' ପାଗଳ ହୋଇଯାଇଛନ୍ତି । ସେ ଯାହା ଗପୁଛନ୍ତି, ତାହା ପାଗଳର ପ୍ରଳାପ ଛଡ଼ା କିଛି ନୁହେଁ ।''

ଏ ସମ୍ବାଦ ଶୁଣି ପ୍ରଫେସର ସତକୁସତ ପାଗଳ ହୋଇଯାଇଥାନ୍ତେ; କିନ୍ତୁ ଡ. ଶ୍ରୀକାନ୍ତ ତାଙ୍କୁ ଆସି ଧୈର୍ଯ୍ୟ ଦେଲେ । ଡ. ଶ୍ରୀକାନ୍ତ ମଧ୍ୟ ଜଣେ ବିଜ୍ଞାନ ଗବେଷକ । ପ୍ରଫେସର ଆନନ୍ଦକୁମାରଙ୍କର ସେ ଥିଲେ ଛାତ୍ର । କିନ୍ତୁ ସେ ଜାଣିନଥିଲେ, ପ୍ରଫେସରଙ୍କ ଗବେଷଣାର ବିଷୟବସ୍ତୁ କ'ଣ ଏବଂ ସେ କ'ଣ ଉଦ୍ଭାବନ କରିଛନ୍ତି ।

ପ୍ରଫେସର ତାଙ୍କୁ ପଚାରିଲେ, ''ଶ୍ରୀକାନ୍ତ, ଅନ୍ତତଃ ତମେ ମୋତେ ପାଗଳ ଭାବୁନ ତ ?'' ଶ୍ରୀକାନ୍ତ ପ୍ରଫେସରଙ୍କୁ କୁଣ୍ଢାଇ ପକାଇ କହିଲେ, ''ସାର୍, କିଏ କହିଲା ଆପଣଙ୍କୁ ପାଗଳ ବୋଲି ? ବରଂ ଆପଣଙ୍କ ଗବେଷଣାର ଅଦ୍ଭୁତ ସଫଳତା ଲୋକଙ୍କୁ ପାଗଳ କରିଦେଇଛି । ତେଣୁ ସେମାନେ କିଛି ବୁଝିନପାରି ଆପଣଙ୍କୁ ପାଗଳ କହୁଛନ୍ତି ।''

''ତା'ମାନେ ମୋ' ତଥ୍ୟକୁ ତମେ ବିଶ୍ୱାସ କରୁଛ ?'' ପ୍ରଫେସର ପଚାରିଲେ ।

ଶ୍ରୀକାନ୍ତ କହିଲେ, ''ସାର୍, ପ୍ରକୃତରେ ଆପଣଙ୍କ ତଥ୍ୟଟି କ'ଣ ମୁଁ ଏପର୍ଯ୍ୟନ୍ତ ଜାଣିନି; କିନ୍ତୁ ଏତିକି ବିଶ୍ୱାସ ଅଛି, ଆପଣଙ୍କ ଦୀର୍ଘ ବର୍ଷ ଗବେଷଣାର ଫଳ ବିଜ୍ଞାନ ଦୁନିଆଁରେ ନିଶ୍ଚୟ ଚମକ ସୃଷ୍ଟି କରିଥିବ, ଯାହାକୁ ଲୋକେ ବିଶ୍ୱାସ କରୁନାହାନ୍ତି ।''

ଡ. ଶ୍ରୀକାନ୍ତଙ୍କ କଥା ପଦଟି ଶୁଣି ପ୍ରଫେସରଙ୍କ ଉଦାସ ମୁହଁଟି ଉଜ୍ଜ୍ୱଳ ଦିଶିଲା । ଡ. ଶ୍ରୀକାନ୍ତ ତାଙ୍କ ଉଦ୍ଭାବନ ବିଷୟରେ ଜାଣିବାପାଇଁ ଯେତେବେଳେ ଆଗ୍ରହ ପ୍ରକାଶ କଲେ, ସେ ପଚାରିଲେ, ''ଶ୍ରୀକାନ୍ତ, ତମେ 'ଟାଇମ ମେସିନ' ବହିଟା ପଢ଼ିଛ ? ପ୍ରଖ୍ୟାତ ବିଜ୍ଞାନ ଲେଖକ ଏଚ.ଜି.ୱେଲସ୍‌ଙ୍କ ରୋମାଞ୍ଚକର ଉପନ୍ୟାସ !''

ଶ୍ରୀକାନ୍ତ କହିଲେ, ''ହଁ ସାର୍, ସେ ବହିଟା ଅତି କମ୍‌ରେ ତିନିଥର ମୁଁ ପଢ଼ିଛି । ବଡ଼ ଚମତ୍କାର ଲେଖା !! ଲେଖକଙ୍କ କଳ୍ପନାଶକ୍ତିକୁ ମାନିବାକୁ ପଡ଼ିବ । କିନ୍ତୁ ସାର୍, ଆପଣ ସେ ବହି ବିଷୟରେ କାହିଁକି ପଚାରୁଛନ୍ତି ?''

ପ୍ରଫେସର କହିଲେ, ''କାରଣ ସେ ଉପନ୍ୟାସର ମୂଳତତ୍ତ୍ୱ ହିଁ ଥିଲା ମୋ ଗବେଷଣାର ବିଷୟବସ୍ତୁ ।''

''କିନ୍ତୁ ସାର୍, ଗୋଟେ କାଳ୍ପନିକ କାହାଣୀକୁ ନେଇ କଣ ଗବେଷଣା କରାଯାଇପାରେ ?'' ଶ୍ରୀକାନ୍ତ ପ୍ରଶ୍ନକଲେ ବିସ୍ମୟରେ । ପ୍ରଫେସର କହିଲେ, ତମେ 'ରବର୍ଟ ଗଡାର୍ଡ଼'ଙ୍କ ଉକ୍ତିଟି କଣ ଭୁଲିଗଲଣି ? ସେ କହିଥିଲେ–''ଗତ କାଲିର ସ୍ୱପ୍ନ, ଆଜିର କଳ୍ପନା ଆଗାମୀ କାଲିର ବାସ୍ତବତାକୁ ଜନ୍ମ ଦିଏ ।'' ଏ ଉକ୍ତି ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ମୁଁ ପ୍ରମାଣ କରିଦେଇଛି ।''

ଶ୍ରୀକାନ୍ତ ଉତ୍କଣ୍ଠିତ ଭାବେ କହିଲେ, ''ସାର୍, ମୋର ଆଉ ଧୈର୍ଯ୍ୟ ନାହିଁ ଏତେ କଥା ଶୁଣିବାକୁ । ଆପଣ ଟିକେ ସ୍ପଷ୍ଟ କରି କହନ୍ତୁ, କ'ଣ କହିବାକୁ ଚାହୁଁଛନ୍ତି ?''

'ଟାଇମ୍ ମେସିନ୍' ବହିର ଲେଖକ ଯାହା କହିବାକୁ ଚାହିଁଥିଲେ, ଠିକ୍ ସେଇ କଥା ହିଁ ମୁଁ ତୁମକୁ କହୁଛି । ଅର୍ଥାତ୍ ସମୟକୁ ଅତିକ୍ରମ କରିବା ଆଦୌ ଅସମ୍ଭବ ନୁହେଁ । ଆମେ ଯେମିତି ଦୈର୍ଘ୍ୟକୁ ଅତିକ୍ରମ କରିପାରୁଛେ, ପ୍ରସ୍ଥକୁ ଅତିକ୍ରମ କରିପାରୁଛେ, ଉଚ୍ଚତାକୁ ମଧ୍ୟ ଅତିକ୍ରମ କରିପାରୁଛେ, ଠିକ୍ ସେମିତି ସମୟ ବା 'କାଳ'କୁ ମଧ୍ୟ ଅତିକ୍ରମ କରିପାରିବା । ଦୈର୍ଘ୍ୟ, ପ୍ରସ୍ଥ, ଉଚ୍ଚତା ଅତିକ୍ରମ କରିବାପାଇଁ ନିଜର ଶକ୍ତି କିମ୍ବା ସାଧାରଣ 'ଯାନ'ଟିଏ ଦରକାର ପଡ଼େ; କିନ୍ତୁ ସମୟକୁ ଅତିକ୍ରମ କରିବାପାଇଁ ଦରକାର ଗୋଟେ ବିଶେଷ ଶକ୍ତିସମ୍ପନ୍ନ ଯନ୍ତ୍ର, ଯାହାକୁ କୁହାଯାଏ 'ଟାଇମ୍‌ମେସିନ୍' ବା ସମୟ ଯନ୍ତ୍ର । ଶ୍ରୀକାନ୍ତ..., କେହି ବିଶ୍ୱାସ ନ

କରନ୍ତୁ ପଛେ, ଅନ୍ତତଃ ତମେ କର, ମୁଁ ସେହି ଅଦ୍ଭୁତ ଶକ୍ତିସମ୍ପନ୍ନ 'ସମୟ-ଯନ୍ତ୍ର'ଟି ଉଦ୍ଭାବନ କରିବାକୁ ସମର୍ଥ ହୋଇଯାଇଛି ।''

ପ୍ରଫେସରଙ୍କ କଥା ଶୁଣି ଶ୍ରୀକାନ୍ତ ବିସ୍ମୟରେ କାଠ ପାଲଟିଗଲେ । ପ୍ରଫେସର ତାଙ୍କ ବାହୁକୁ ଧରି ହଲାଇ ଦେଇ କହିଲେ, ''ଶ୍ରୀକାନ୍ତ...ପ୍ରକୃତିସ୍ଥ ହୁଅ ଏବଂ ମୋ କଥାକୁ ବିଶ୍ୱାସ କର । ଏବେ ବି ଯଦି ବିଶ୍ୱାସ ନ ଲାଗୁଛି ଆସ ମୋ' ସାଙ୍ଗରେ ମୋ' ଗବେଷଣା କକ୍ଷକୁ ।''

ବୈଜ୍ଞାନିକଙ୍କ ପଛେପଛେ ଚାବିଦିଆ କଣ୍ଢେଇ ପରି ଚାଲିଲେ ଡ. ଶ୍ରୀକାନ୍ତ । ଦୁହେଁ ଯାଇ ପହଁଞ୍ଚିଲେ ଗବେଷଣା କକ୍ଷରେ । କକ୍ଷର ଠିକ୍ ମଝାମଝି ଗୋଟେ ବଡ଼ ଅଣ୍ଡାକାର ବସ୍ତୁ ଥିଲା । ତା' ଉପରେ ବଡ଼ ବଡ଼ ଇଂରାଜୀ ଅକ୍ଷରରେ ଲେଖା ହୋଇଥିଲା 'ୱେଲସ୍ ମେଜିକ୍ ମେସିନ୍' । ପ୍ରଫେସର କହିଲେ, ''ହେଇ ଦେଖ ମୋ 'ଟାଇମ ମେସିନ' । ମୁଁ ସେ ଯନ୍ତ୍ରର ନାଁ ଏହାର ଅସଲ ଉଦ୍ଭାବକ ଏଚ୍.ଜି. ୱେଲସ୍‌ଙ୍କ ନାମ ଅନୁସାରେ ରଖିଛି, 'ୱେଲସ୍ ମେଜିକ୍ ମେସିନ୍' !



ଶ୍ରୀକାନ୍ତ ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରିପାରିଲେନି । କିନ୍ତୁ ନିଜ ଆଖି ଅପେକ୍ଷା ବୈଜ୍ଞାନିକଙ୍କ ସଫଳତା ଉପରେ ତାଙ୍କର ଅଧିକ ବିଶ୍ୱାସ ଥିଲା । ସେ ପାଖକୁ ଯାଇ ଦେଖିଲେ,

ସେଟା ଥିଲା ପ୍ରାୟ ଛ'ଫୁଟ ଉଚ୍ଚର ଗୋଟେ ଅଣ୍ଡାକାର ବସ୍ତୁ । ଅବିକଳ କୁକୁଡ଼ା ଅଣ୍ଡା ପରି ଗୋଲାପି-ଧଳା, ଚିକ୍କଣ ଏବଂ ଚାରିପଟୁ ସମତୁଲ । ଅଣ୍ଡାଟା ଭୂମି ଉପରେ ଲମ୍ବ ଭାବରେ ରହିଥିଲା ।

ପ୍ରଫେସର କହିଲେ, ''ଆମେ ଏ ଯନ୍ତ୍ରରେ ଚଢ଼ି ସମୟକୁ ଅତିକ୍ରମ କରିପାରିବା । ଏହାର ଦୁଇ ପ୍ରକାର ଗତି ଅଛି–ଆଗୁଆ ଓ ପଛୁଆ । ତା'ମାନେ ତମେ ଅତୀତ ଆଡ଼କୁ ଯାଇପାରିବ, ପୁଣି ମନ କଲେ ଅତୀତରୁ ବର୍ତ୍ତମାନକୁ ଫେରିଆସି ପାରିବ । ବର୍ତ୍ତମାନରୁ ପୁଣି ଭବିଷ୍ୟତ ଯୁଗକୁ ମଧ୍ୟ ଯାଇପାରିବ ।''

ଶ୍ରୀକାନ୍ତ କୌତୂହଳ ଚାପି ନପାରି ପଚାରିଲେ, ''ସାର୍, ମୋର ଦୃଢ଼ ବିଶ୍ୱାସ, ଆପଣ ଯାହା କହୁଛନ୍ତି, ତାହା ଅକ୍ଷରେ ଅକ୍ଷରେ ସତ ହେଇଥିବ ; କିନ୍ତୁ ଏ ଯନ୍ତ୍ରଟିକୁ ଆପଣ ନିଜେ କେବେ ପରୀକ୍ଷା କରିଛନ୍ତି କି ?''

ପ୍ରଫେସର କହିଲେ, ''ଦେଖ ଶ୍ରୀକାନ୍ତ, ମୋ' ଗବେଷଣାର ଫଳ ଉପରେ ମୋର ପୂର୍ଣ୍ଣ ଆସ୍ଥା ଅଛି । ଯା'କୁ ପରୀକ୍ଷା କରିବାକୁ ଗଲେ ଯେତିକି ଧୈର୍ଯ୍ୟ, ସାହସ, ଆତ୍ମବିଶ୍ୱାସ ଓ ମାନସିକ ପ୍ରସ୍ତୁତି ଦରକାର, ତାହା ମଧ୍ୟ ମୋ' ଦେଇ ସମ୍ଭବ । ସବୁଠୁ ବଡ଼ କଥା ହେଲା, ଦୁଇଜଣ ଚାଳକ ନ ହେଲେ ଏ ଯନ୍ତ୍ରକୁ ଚଳାଇବା ସହଜ ନୁହେଁ । ତେଣୁ ମୁଁ ତୁମପରି ଜଣେ ବିଶ୍ୱସ୍ତ ସହଯୋଗୀ ଅପେକ୍ଷାରେ ହିଁ ଥିଲି । ତମେ ଯଦି ରାଜି ହେବ, ତା'ହେଲେ ଯାକୁ ଆମେ ପରୀକ୍ଷାମୂଳକ ଭାବେ ଚଳାଇ ଦେଖିବା । କ'ଣ ରାଜି ?''

''ସାର୍ ଏଥିପାଇଁ ମୁଁ ପ୍ରସ୍ତୁତ ; କିନ୍ତୁ ତା' ଆଗରୁ ମୋତେ ଟିକିଏ ଶିଖାଇ ଦିଅନ୍ତୁ, ଏହା କେମିତି ଚଳାଯାଏ ।'' ଶ୍ରୀକାନ୍ତ ଉତ୍କଣ୍ଠାର ସହିତ ପଚାରିଲେ ।

ପ୍ରଫେସର ଗୋଟେ ରିମୋଟ୍ ପରି ଯନ୍ତ୍ର ଧରିଥିଲେ । ମେସିନ୍ ଆଡ଼କୁ ଦେଖାଇ ସେ 'ବଟନ୍'ଟିଏ ଟିପିଲେ । ତତ୍କ୍ଷଣାତ୍ ଅଣ୍ଡାକାର ଯନ୍ତ୍ରର ଉପର ଫାଳଟା ଫରୁଆର ଡାଙ୍କୁଣୀ ଖୋଲିବା ପରି ଉପରକୁ ଉଠିଗଲା ।

ଶ୍ରୀକାନ୍ତ ତା' ପାଖକୁ ଗଲେ । ଦେଖିଲେ, ଭିତରଟା ଗୋଟେ ଗୋଲାକାର କେବିନ୍ । ଖୁବ୍ ବଡ଼ଆକାରର ଚାହା କପ୍ ପରି ଲାଗୁଛି । ତା' ଭିତରେ ଦୁଇ ବିପରୀତ ପାଖରେ ଦୁଇଟା ସିଟ୍ ପଡ଼ିଛି । ସେ ସିଟ୍ ଉପରେ ଯେଉଁ ଦୁଇଜଣ ବସିବେ ପରସ୍ପରକୁ ପଛ କରି ବସିବାକୁ ପଡ଼ିବ । ଉଭୟ ସିଟ୍ ଆଗରେ ରହିଛି ଛୋଟ ଛୋଟ ଦୁଇଟା ଡ୍ୟାସ୍‌ବୋର୍ଡ଼ । ଗୋଟେ ଡ୍ୟାସ୍‌ବୋର୍ଡ଼ରେ ଖଞ୍ଜା ହେଇଛି କମ୍ପ୍ୟୁଟର ସ୍କ୍ରୀନ୍ ପରି ଛୋଟ ମନିଟରଟିଏ । ତା'

ପାଖରେ ଅଛି କି-ବୋର୍ଡ଼ ଓ ମାଉସ୍ । ଅନ୍ୟ ଡ୍ୟାସବୋର୍ଡ଼ରେ କେବଳ ତିନିରଙ୍ଗର ତିନିଟା ବଟନ୍ ଲାଗିଛି । ବାସ୍, ଯନ୍ତ୍ରପାତି କହିଲେ ସେତିକି ମାତ୍ର ।

ପ୍ରଫେସର କହିଲେ, ''ଶ୍ରୀକାନ୍ତ, ଏବେ ମୁଁ ତୁମକୁ ଏହାର ଚଳାଇବା ପଦ୍ଧତି ବିଷୟରେ ସୂଚନା ଦେଉଛି । ପ୍ରଥମେ ଏ ଯନ୍ତ୍ରକୁ ଷ୍ଟାର୍ଟ କରିବା ପାଇଁ ଗୋଟେ 'ସିକ୍ରେଟ୍ ନମ୍ବର' ବା ଗୁପ୍ତସଂଖ୍ୟା ଅଛି । ତା'ପରେ ଗୋଟେ 'କୋଡ୍-ୱାର୍ଡ଼' ବା ସାଙ୍କେତିକ ଶବ୍ଦ । ମନିଟରରେ ଏ ଦୁଇଧାଡ଼ି ଟାଇପ୍ କରି ଓ.କେ. କ୍ଲିକ୍ କଲେ ମେସିନ୍ ମନକୁ ଷ୍ଟାର୍ଟ ହୋଇଯିବ । ତା'ପରେ ଅନ୍ୟ ଡ୍ୟାସ୍‌ବୋର୍ଡ଼ରେ ଥିବା ତିନୋଟି ବଟନର କାମ । ବାଁ ପାଖର ଧଳା ବଟନକୁ ଚିପିଲେ ସମୟ-ଯନ୍ତ୍ର ଭବିଷ୍ୟତ ପଥରେ ଗତି କରେ ଡାହାଣ ପାଖ କଳାବଟନ ଚିପିଲେ ତା'ର ଗତି ଅତୀତ ଯୁଗକୁ ବଙ୍କେଇଯାଏ । ମଝିରେ ଥିବା ନାଲି ବଟନ ଚିପି ଯନ୍ତ୍ରକୁ ସଙ୍ଗେ ସଙ୍ଗେ ବନ୍ଦ କରାଯାଇପାରେ । କିନ୍ତୁ ଏଠି ଗୋଟେ କଥା ସବୁବେଳେ ମନେ ରଖିବାକୁ ପଡ଼ିବ ବାଁ କିମ୍ବା ଡାହାଣ ପାଖ ବଟନ୍‌କୁ ଚିପିବା ମାତ୍ରେ ଯନ୍ତଟି ସେକେଣ୍ଡକ ଭିତରେ ହଜାର ହଜାର ବର୍ଷ ପଛକୁ କିମ୍ବା ଆଗକୁ ଅତିକ୍ରମ କରିବା ସୂଚନା ମନିଟରରୁ ମିଳିବ । ଚାଳକ ସତର୍କ ରହି ସେ କେତେ ବର୍ଷ ଆଗକୁ କି ପଛକୁ ଯିବାକୁ ଚାହୁଁଛି ଠିକ୍ ସେତିକିରେ ତାକୁ ମଝି ବଟନ୍ ଚିପିବାକୁ ପଡ଼ିବ । ନହେଲେ ସେ ଅନନ୍ତ ସମୟ ସ୍ରୋତରେ କୁଆଡ଼େ ଯେ ହଜିଯିବ ତା'ର କଳନା କରିବା ମୁସ୍କିଲ୍ । ତେଣୁ ଏ ଯନ୍ତ୍ରରେ ଅନ୍ତତଃ ଦୁଇଜଣ ସତର୍କ ଚାଳକ ରହିବା ନିହାତି ଜରୁରୀ । କ'ଣ ଶ୍ରୀକାନ୍ତ, ଏ ଅଭିଯାନ ପାଇଁ ତମେ ଏବେ ପ୍ରସ୍ତୁତ ତ ?''

ଶ୍ରୀକାନ୍ତ ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ, ''ସାର୍ ମୁଁ ପ୍ରସ୍ତୁତ; କିନ୍ତୁ ଘରକୁ ଯାଇ ପରିବାରଠାରୁ ବିଦାୟ ନେଇ ଆସିବାକୁ ଥରେ ଅନୁମତି ଦିଅନ୍ତୁ, କାଳେ... ।''

''ଓହୋ...ତମେ ଭାବୁଛ କାଳେ କିଛି ଅଘଟଣ ଘଟିଯାଇପାରେ–ଏଇ କଥା ତ ? ଠିକ୍ ଅଛି ତୁମକୁ ମୁଁ ଗୋଟେ ରାତି ସମୟ ଦେଲି । ତମେ କାଲି ସକାଳ ଆଠଟାରେ ଆସି ପହଞ୍ଚିବ । ଆମେ ଏହି ଅଦ୍ଭୁତ ଅଭିଯାନ ଆରମ୍ଭ କରିବା ଠିକ୍ ସାଢ଼େ ଆଠରେ ।''

× × × ×

ସକାଳ ଠିକ୍ ଆଠଟାରେ ବୈଜ୍ଞାନିକ ଆନନ୍ଦକୁମାରଙ୍କ କଲିଂବେଲ୍ ବାଜିଉଠିଲା । ଶ୍ରୀକାନ୍ତ ପ୍ରସ୍ତୁତ ହୋଇ ଆସିଥିଲେ । ବୈଜ୍ଞାନିକ ମଧ୍ୟ ତାଙ୍କ ବାଟକୁ ହିଁ ଚାହିଁ ବସିଥିଲେ । ଦୁହେଁ ଯାଇ ଗବେଷଣା କକ୍ଷରେ ପହଞ୍ଚିଲେ । ବୈଜ୍ଞାନିକ ପଚାରିଲେ, ''ଶ୍ରୀକାନ୍ତ, ତମେ କ'ଣ ଠିକ୍ କରିଛ, 'ସମୟଯାତ୍ରା'ରେ ଆମେ ଭବିଷ୍ୟତ ପଥରେ ଗତି କରିବା ନା ଅତୀତ ଆଡ଼କୁ ଅଗ୍ରସର ହେବା ?''

ଶ୍ରୀକାନ୍ତ ଟିକେ ଚିନ୍ତାକରି କହିଲେ, ‘‘ପ୍ରଫେସର୍, ମୋ’ ମତରେ ଆମେ ପ୍ରଥମେ କିଛିବର୍ଷ ପଛକୁ ଯିବା ଠିକ୍ ହେବ । ସେଥିରେ ହିଁ ଆମ ‘ସମୟ ଯନ୍ତ୍ର’ର ପ୍ରକୃତ ପରୀକ୍ଷା ହେଇପାରିବ । କାରଣ ଆମେ ଅତୀତ ବିଷୟରେ ଅନେକ କଥା ଜାଣିଛେ । ଆଗାମୀ ଯୁଗ ସମ୍ପର୍କରେ ଆମର ଖାସ୍ ଧାରଣା ନାହିଁ ।’’

ପ୍ରଫେସର କହିଲେ, ‘‘ତମେ ଠିକ୍ କହିଛ । ପ୍ରଥମେ ଆମେ ଅତୀତ ଯୁଗକୁ ଯାଇ କିଛି ସମୟ ଭ୍ରମଣ କରି ଆସିବା ।’’ ଏହା କହି ସେ ରିମୋଟକୁ ଯନ୍ତ୍ର ଆଡ଼କୁ ଦେଖାଇ ବଟନ୍ ଚିପିଲେ । ସାଏଁ...କିନା ଖୋଲିଗଲା ସମୟଯନ୍ତ୍ରର ଉପର ଢାଙ୍କୁଣୀ । ଦୁହେଁ ତା’ ଉପରକୁ ଉଠି ନିଜ ନିଜ ସିଟ୍‌ରେ ବସିଲେ । ପ୍ରଫେସର ବସିଲେ କି-ବୋର୍ଡ଼ ପାଖରେ । ସେ କହିଲେ, ‘‘ଶ୍ରୀକାନ୍ତ, ମେସିନ୍ ପ୍ରଥମେ ମୁଁ ଷ୍ଟାର୍ଟ କରିବି । ତମେ ମତେ ଭୁଲ ବୁଝିବନି, ଏହାର ଗୁପ୍ତସଂଖ୍ୟା ଏବଂ ପାସ୍‌ୱାର୍ଡ଼ ଏବେ ମୁଁ ତୁମକୁ ଖୋଲି କହିବା ଉଚିତ ମନେ କରୁନି । ଆମ ଅଭିଯାନ ସଫଳ ହେଲେ ତାହା ମୁଁ ତୁମକୁ ନିଶ୍ଚୟ କହିଦେବି । ଆଚ୍ଛା, ତମେ ଏବେ ପ୍ରସ୍ତୁତ ତ ?’’

ଶ୍ରୀକାନ୍ତ ଦୃଢ଼ ଭାବରେ କହିଲେ, ‘‘ମୁଁ ପ୍ରସ୍ତୁତ ସାର୍, ଆପଣ ମେସିନ୍ ଷ୍ଟାର୍ଟ କରନ୍ତୁ ।’’

ପ୍ରଫେସର ପ୍ରଥମେ ସମୟଯନ୍ତ୍ରର ଉପର ଢାଙ୍କୁଣୀ ବନ୍ଦ କଲେ । ତା’ପରେ ସେ ମନିଟର ଉପରେ ସିକ୍ରେଟ ନମ୍ବର ଏବଂ କୋଡ଼-ୱାର୍ଡ଼ ଟାଇପ୍ କରି କ୍ଲିକ୍ କଲେ । ...ଚାହୁଁ ଚାହୁଁ ଗୋଟେ ଅସ୍ପଷ୍ଟ ଘର୍ଘର ଧ୍ୱନି ସହିତ ସମୟଯନ୍ତ୍ର ଷ୍ଟାର୍ଟ ହୋଇଗଲା । ପ୍ରଫେସର ଏଥର ସଙ୍କେତ ଦେଲେ ଶ୍ରୀକାନ୍ତଙ୍କୁ କଳା ବଟନଟିକୁ ଚିପିବା ପାଇଁ । ଶ୍ରୀକାନ୍ତ ସତର୍କ ଥିଲେ । ସେ ସଙ୍ଗେ ସଙ୍ଗେ ବଟନକୁ ଚିପିଦେଲେ ।

ସେତିକିରେ ଗୋଟେ ଝଟ୍‌କା ଲାଗିଲା ଦୁହିଁଙ୍କୁ । ତା’ପରେ ସମଗ୍ର ଅଣ୍ଡାକାର ଯନ୍ତ୍ରଟା ନଟୁପରି ଘୂରିବାକୁ ଲାଗିଲା । ଘୂର୍ଣ୍ଣନର ଗତି ଧୀରେଧୀରେ ବଢ଼ିଲା । ତୀବ୍ରରୁ ତୀବ୍ରତର ହେଲା ତା’ ଗତି । ଦୁଇ ବୈଜ୍ଞାନିକ ଦୃଢ଼ଭାବେ ନିଜ ନିଜ ସିଟ୍‌କୁ ଭିଡ଼ିଧରି ବସିବାକୁ ଚେଷ୍ଟାକଲେ; କିନ୍ତୁ ପାରିଲେନି । ହଠାତ୍ ସେମାନଙ୍କ ଆଖି ଆଗର ଦୃଶ୍ୟ ବଦଳି ଯାଇଥିଲା । ମନେହେଲା ସେମାନେ ମେସିନ୍ କକ୍ଷ ଭିତରୁ ଛିଟ୍‌କି ପଡ଼ିଛନ୍ତି ଏବଂ ଉଡ଼ିବୁଲୁଛନ୍ତି ଅନନ୍ତ-ମହାକାଶରେ । ସେମାନଙ୍କ ଚାରିପାଖରେ ଧାଡ଼ିଧାଡ଼ି ଚନ୍ଦ୍ରସୂର୍ଯ୍ୟ ! ଅସଂଖ୍ୟ ଗ୍ରହ-ନକ୍ଷତ୍ର ! ଉଲକା ଓ ଗ୍ରହାଣୁପୁଞ୍ଜର ଭେଳା । ଗୋଟେ ଅତି ଉଜ୍ଜ୍ୱଳ

ଆଲୋକବିନ୍ଦୁ । ମନେହେଉଥିଲା ସୂର୍ଯ୍ୟ । ସୂର୍ଯ୍ୟ ମଧ୍ୟ ଘୂରୁଥିଲା ଖୁବ୍ ଜୋର୍‌ରେ । ଆଖି ପିଛୁଳାକେ ସେ ଉଦୟ ହେଉଥିଲା ପଶ୍ଚିମରେ ଏବଂ ଅସ୍ତ ହେଉଥିଲା ପୂର୍ବ ଦିଗରେ ! ବଡ଼ ବିସ୍ମୟକର ଦୃଶ୍ୟ । ପ୍ରତି ମୁହୂର୍ତ୍ତରେ ଶହ ଶହ ଦିନ-ରାତି । ପ୍ରତିକ୍ଷଣରେ ପ୍ରତିଟି ଦୃଶ୍ୟ ବଦଳି ଯାଉଥିଲା । ପୁରୁଣା ଘରଦ୍ୱାର ସବୁ ଆଖି ପିଛୁଳାକେ ନୂଆ ହୋଇଯାଉଥିଲା ଏବଂ ପର ମୁହୂର୍ତ୍ତରେ ଅଦୃଶ୍ୟ ହୋଇଯାଉଥିଲା । ବଡ଼ ବଡ଼ ଗଛଗୁଡ଼ିକ ଚାହୁଁଚାହୁଁ ଅଙ୍କୁରରେ ପରିଣତ ହୋଇ ମାଟିରେ ମିଶି ଯାଉଥିଲା । ବୁଢ଼ା ବୁଢ଼ା ମଣିଷଗୁଡ଼ାକ ହଠାତ୍ କଅଁଳା ଶିଶୁ ହୋଇ କୁଆଡ଼େ ହଜିଯାଉଥିଲେ ।

ଏ ସବୁ ଦୃଶ୍ୟ ଦେଖି ଦୁଇ ବୈଜ୍ଞାନିକ କିଛି ସମୟ ପାଇଁ ନିଜ ନିଜ ସ୍ଥିତି ହିଁ ଭୁଲିଯାଇଥିଲେ । ପ୍ରଫେସର ଆନନ୍ଦ ଜାଣିଥିଲେ ଯେ-ସମୟଯନ୍ତ୍ରରେ ପଛୁଆ ଗଲେ ଏପରି ଅଦ୍ଭୁତ ଦୃଶ୍ୟ ତାଙ୍କୁ ସାମନା କରିବାକୁ ପଡ଼ିବ; କିନ୍ତୁ ସେ ପରିସ୍ଥିତିରେ ସେ ସବୁକିଛି ଭୁଲିଯାଇଥିଲେ । ସେ ମନିଟର ଦେଖି ବର୍ଷ ଗଣିବେ କଣ ନିଜକୁ ବି ଦେଖିପାରୁ ନଥିଲେ । ସହସା ସେ ପ୍ରକୃତିସ୍ଥ ହେଲେ ଏବଂ ଚିତ୍କାର କରିବାକୁ ଲାଗିଲେ, "ଶ୍ରୀକାନ୍ତ...ହୁସିଆର...ଆମେ ସମୟର ବହୁତ ପଛକୁ ଚାଲିଗଲେଣି । ମେସିନ୍ ଗତି ଶୀଘ୍ର ବନ୍ଦକର । ଅତି ଚଞ୍ଚଳ ନାଲି ବଟନ୍‌କୁ ଚିପିଦିଅ... ।"

ବୈଜ୍ଞାନିକଙ୍କ ଗୋଟିଏ ବି ଶବ୍ଦ ଶ୍ରୀକାନ୍ତଙ୍କୁ ଶୁଭୁନଥିଲା । ସେ ନିଜକୁ ପୂରାପୂରି ହଜେଇ ଦେଇଥିଲେ ସମୟର ଉଜାଣି ସୁଅରେ । ଯେତେବେଳେ ପ୍ରକୃତିସ୍ଥ ହେଲେ ସେ ମଧ୍ୟ ଚମକି ପଡ଼ିଲେ । ଅଣ୍ଡାଳିବାକୁ ଲାଗିଲେ ଡ୍ୟାସ୍‌ବୋର୍ଡ଼ର ନାଲି ବଟନ । ବହୁତ କଷ୍ଟରେ ମିଳିଲା । ସଙ୍ଗେ ସଙ୍ଗେ ସେ ଚିପିଦେଲେ । ମେସିନ୍‌ର ଘୂର୍ଣ୍ଣନ ବନ୍ଦ ହୋଇଗଲା । କିନ୍ତୁ ସେତେବେଳକୁ ଅନେକ ଡେରି ହୋଇଯାଇଥିଲା ।

ପ୍ରଫେସର ଆନନ୍ଦ କୁମାର ମନିଟର ଦେଖି ଚମକି ପଡ଼ିଲେ । କାରଣ ହଜାରେ ନୁହଁ କି ଲକ୍ଷେ ନୁହଁ, ସେମାନେ ଚାଲିଯାଇଥିଲେ ପୂରାପୂରି ସାଢ଼େ ଛ'କୋଟି ବର୍ଷ ପଛକୁ !

ଶ୍ରୀକାନ୍ତ ଏ ହିସାବକୁ ଆଦୌ ବିଶ୍ୱାସ କରିପାରିଲେନି । ଏପରି ଘଟଣା ଘଟିବ ବୋଲି ପ୍ରଫେସର ଆନନ୍ଦ ମଧ୍ୟ ଆଶଙ୍କା କରିନଥିଲେ । ସେ ଆତଙ୍କିତ ମନରେ ସମୟଯନ୍ତ୍ରର ଢାଙ୍କୁଣୀ ଖୋଲିଲେ । ଦେଖନ୍ତି ତ ସେମାନେ ଆସି ପହଞ୍ଚିଯାଇଛନ୍ତି ନିଘଞ୍ଚ ଜଙ୍ଗଲ ମଝିରେ । ସମୟ-ଯନ୍ତ୍ର ଠିଆ ହୋଇଥିଲା ଗୋଟେ ଛୋଟ ଲଣ୍ଡା-ପାହାଡ଼ର

ଶିଖର ଉପରେ । ପାହାଡ଼ ଚାରିପାଖରେ ଅଝାଡ଼ ଜଙ୍ଗଲ । ଯୁଆଡ଼କୁ ଚାହିଁଲେ କେବଳ ପାହାଡ଼-ପର୍ବତ ଓ ବୃକ୍ଷଲତା । ଚତୁର୍ଦ୍ଦିଗରେ ସବୁଜିମାର ସମୁଦ୍ର ! ସେ କୁନି ଲଣ୍ଡାପାହାଡ଼ଟା ଲାଗୁଥିଲା ସମୁଦ୍ର ମଝିରେ ଛୋଟ ଟାପୁଟିଏ ପରି ।

ଦୁଇବନ୍ଧୁ ସମୟ ଯନ୍ତ୍ରରୁ ଓହ୍ଲାଇଲେ । ପାହାଡ଼ ଉପରେ ପାଦଦେବା ମାତ୍ରେ ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ସେଇଟା ଥିଲା ଗୋଟେ ମାର୍ବଲ-ପାହାଡ଼ । ଖୁବ୍ ଛୋଟ କିନ୍ତୁ ଅତି ସୁନ୍ଦର । ଧୂସର ରଙ୍ଗର ମାର୍ବଲ ଉପରେ କଳା ପଟା ପଟା ଦାଗ । କଇଁଛ ପିଠି ପରି ଚାରିଆଡ଼କୁ ଢାଲୁ । ସାଢ଼େ ଛ'କୋଟି ବର୍ଷ ପୂର୍ବେ ପୃଥିବୀରେ ଏତେ ସୁନ୍ଦର ପାହାଡ଼ମାନ ଥିଲା ବୋଲି ସେମାନେ କୌଣସି ବହିପତ୍ରରୁ ପଢ଼ିନଥିଲେ ।



ଶ୍ରୀକାନ୍ତ ଚାରିଦିଗରୁ ଦୃଷ୍ଟି ଫେରାଇ ଆଣି କହିଲେ, ''ଯା'ହେଉ, ଆମେ ଏ ପାହାଡ଼ ଶିଖରରେ ପହଁଞ୍ଚିଛେ । ମନେହେଉଛି ଜଙ୍ଗଲ ଅପେକ୍ଷା ଏ ସ୍ଥାନଟା ଅଧିକ ନିରାପଦ । ଦେଖନ୍ତୁ...କେଡ଼େ ବଡ଼ ବଡ଼ ଗଛ ସବୁ ଆକାଶକୁ ମୁଣ୍ଡଟେକି ଠିଆ ହେଇଛି । ହେଲେ ସାର୍...ଆଶ୍ଚର୍ଯ୍ୟର କଥା, ଏଡ଼େ ଭୀଷଣ ଜଙ୍ଗଲ ଭିତରେ କାଉ କି କୋଇଲିର ରାବ ତ କାନରେ ପଡୁନି । ଜଙ୍ଗଲୀ ଜନ୍ତୁ-ଜନ୍ତାଙ୍କର ହେଣ୍ଟାଳ ମଧ୍ୟ ଶୁଭୁନି ।''

ପ୍ରଫେସର ତାଙ୍କୁ ମନେ ପକାଇଦେଲେ, ''ଶ୍ରୀକାନ୍ତ, ତୁମେ ଭୁଲିଯାଉଛ ଯେ-ଆମେ ଏବେ ସାଢ଼େ ଛଅକୋଟି ବର୍ଷ ଅତୀତକୁ ଆସିଛେ । ତମେ କଣ ଜାଣିନ, ସାଢ଼େ ଛ'କୋଟି

ବର୍ଷ ପୂର୍ବେ ପୃଥିବୀରେ ଜୀବ-ଜଗତର ସୃଷ୍ଟି ପୂରାଭାବେ ହୋଇନଥିଲା ? କିଛି ଜଳଚର ପ୍ରାଣୀ, ଗେଣ୍ଡା, ଶାମୁକା ଏବଂ କୀଟ-ପତଙ୍ଗ ଛଡ଼ା ଆମେ ଏଠି ଆଉ କୌଣସି ଜୀବ ଦେଖିବାକୁ ପାଇବାନି ।''

''କିନ୍ତୁ ସାର୍, ରାକ୍ଷସ ଜୀବ ଡାଇନୋସରମାନେ ତ ଏଇ ସମୟରେ ହିଁ ସୃଷ୍ଟି ହୋଇଥିଲେ ବୋଲି ତଥ୍ୟ ମିଳୁଛି ।''

ପ୍ରଫେସର କହିଲେ, ''ହଁ...ସତକଥା, ସାଧାରଣ ଜୀବ-ଜଗତ ସୃଷ୍ଟି ହେବାର ଅନେକ ଆଗରୁ ଡାଇନୋସରମାନେ ସୃଷ୍ଟି ହୋଇଥିଲେ । ଏ ସମୟକୁ ଆମ ଗବେଷକ ମାନେ ନାଁ ଦେଇଛନ୍ତି 'ଜୁରାସିକ-ଯୁଗ' ।''

ଶ୍ରୀକାନ୍ତ କୌତୂହଳ ପ୍ରକାଶ କରି କହିଲେ, ''ତା'ହେଲେ ତ ସେ ଅଦ୍ଭୁତ ପ୍ରାଣୀମାନଙ୍କୁ ଆମେ ଏଠାରେ ଦେଖିପାରିବା ?''

ଶ୍ରୀକାନ୍ତଙ୍କ ମୁହଁରୁ ବାକ୍ୟ ସରିନି, ଗୋଟେ ଚମତ୍କାର ଘଟିଗଲା । ହଠାତ୍ ସତେ ଯେମିତି ଭୂମିକମ୍ପ ଆରମ୍ଭ ହୋଇଗଲା । ଦୁଇ ବୈଜ୍ଞାନିକ ପରସ୍ପରକୁ କୁଣ୍ଢାଇ ଧରି ଚିତ୍କାର କରିବାକୁ ଲାଗିଲେ । କିନ୍ତୁ ପ୍ରକୃତରେ ଭୂ-କମ୍ପ ହୋଇନଥିଲା; ପାହାଡ଼ଟା ଚାଲିବାକୁ ଆରମ୍ଭ କରିଥିଲା । ଶ୍ରୀକାନ୍ତ ବିସ୍ମିତ କଣ୍ଠରେ କହିଲେ, ''ସାର୍, ମୁଁ ପିଲାଦିନେ ପରୀ-କାହାଣୀ ମାନଙ୍କରେ ପଢ଼ିଥିଲି ପାହାଡ଼ ଉଡୁଥିଲା ବୋଲି; କିନ୍ତୁ ଏ' ତ ଚାଲୁଛି ।''

ପ୍ରଫେସର ପାହାଡ଼ର ପାଦ ଦେଶକୁ ଦୃଷ୍ଟି ଦେଇଥିଲେ । ସେ କହିଲେ, ''ଶ୍ରୀକାନ୍ତ, ଟିକେ ତଳକୁ ଦେଖ, ଆମେ ଯାହା ଉପରେ ଠିଆ ହେଇଚେ-ସେଇଟା ପ୍ରକୃତରେ ପାହାଡ଼ ନୁହଁ ବରଂ ଗୋଟେ ପାହାଡ଼ ଆକାରର କଇଁଛ ! ତୁମେ ଯେଉଁ ଡାଇନୋସର କଥା କହୁଥିଲ, ଏଇଟା ସେଇ ଡାଇନୋସର ଜାତୀୟ କଇଁଛ ନିଶ୍ଚୟ ।''

ଶ୍ରୀକାନ୍ତ ବିସ୍ମିତ ହୋଇ ଅନାଇ ରହିଲେ । ବୁଢ଼ା ବରଗଛର ପାକଳ ଗଣ୍ଡି ପରି ଦିଶୁଥିବା ଚାରିଟା ବିଶାଳ ଗୋଡ଼ ନସରପସର ହୋଇ ଏତେବଡ଼ ପାହାଡ଼ଟାକୁ ବୋହି ନେଉଥାଏ । ତା ବିଶାଳ ପଞ୍ଝା ତଳେ ଚାପି ହୋଇ ଗଛଲତା ସବୁ ନିଶ୍ଚିହ୍ନ ହୋଇଯାଉଥାନ୍ତି । ଝଡ଼-ବାତ୍ୟାରେ ଭାଙ୍ଗିବା ପରି ବଡ଼ବଡ଼ ଗଛଗୁଡ଼ିକ ଢଳି ପଡୁଥାଏ ଦୁଇ କଡ଼କୁ । କଇଁଛ ମାଡ଼ି ଚାଲିଥାଏ ଆଗକୁ ।

ଶ୍ରୀକାନ୍ତ କହିଲେ, ''ଯା'ହେଉ, ସାଢ଼େ ଛ'କୋଟି ବର୍ଷ ତଳର ପୃଥିବୀ ପରିଦର୍ଶନ କରିବାକୁ ଈଶ୍ୱର ଆମପାଇଁ ଅଦ୍ଭୁତ ଯାନଟିଏ ବ୍ୟବସ୍ଥା କରିଦେଇଛନ୍ତି । ନହେଲେ ଏ ଭୀଷଣ ଜଙ୍ଗଲ ଭିତରେ ଆମେ ପାଦେ ହେଲେ ଚାଲିପାରି ନଥାନ୍ତେ ।''

ଦୁଇ ବୈଜ୍ଞାନିକ ବନ୍ଧୁଙ୍କ ପାଇଁ ତାହା ଥିଲା ସତରେ ଏକ ରୋମାଞ୍ଚକର ଯାତ୍ରା । ଠିକ୍ ଏତିକିବେଳେ କୁଆଡୁ ଗୋଟେ ଭୀଷଣ ଗର୍ଜନ ଶୁଣାଗଲା । ଗର୍ଜନ ଯେଉଁଆଡୁ ଶୁଭୁଥିଲା କଇଁଛ ସେଇ ଦିଗକୁ ହିଁ ଚାଲିଥାଏ । ଆଗରେ ଦେଖାଗଲା ଏକ ବିଶାଳ ହ୍ରଦ । ହ୍ରଦ ଆର ପାଖକୁ ଦୃଷ୍ଟି ଲମ୍ବିଗଲା ଦୁଇବନ୍ଧୁଙ୍କର । ଦୁହେଁ ସ୍ତବ୍ଧ-ଚକିତ ହୋଇ ଅନାଇ ରହିଲେ । ଦେଖିଲେ, କେତୋଟି ବିଶାଳକାୟ ଡାଇନୋସର ହ୍ରଦ କୂଳରେ ଚଲାବୁଲା କରୁଛନ୍ତି । ଦୁଇଟା ଲଢ଼େଇରେ ମାତିଛନ୍ତି । ସେମାନଙ୍କ ପାଦ ଶବ୍ଦରେ ମାଟି ଦୁଲୁକୁଥାଏ । ହ୍ରଦ ଜଳ ତରଙ୍ଗାୟିତ ହୋଇଉଠୁଥାଏ । ହିଂସ୍ର ଗର୍ଜନରେ ବଣ-ଭୂମି କମ୍ପି ଉଠୁଥାଏ ।



ଠିକ୍ ଏତିକିବେଳେ ଆକାଶଟା ଅନ୍ଧାର ହୋଇଗଲା । ଦେଖୁଦେଖୁ ମାଡ଼ି ଆସିଲା ଝଡ଼ ବତାସ । ଦୁଇବନ୍ଧୁ କାଙ୍କୁଡ଼ା-କାଙ୍କୁଡ଼ି ହେଇ ସମୟ-ଯନ୍ତ୍ର କଡ଼ରେ ବସିପଡ଼ିଲେ । ଆକାଶକୁ ଚାହିଁ ଦେଖନ୍ତି ତ—ଦୁଇଟା ଭୟଙ୍କର ଉଡ଼ନ୍ତା ଡାଇନୋସର ଉପରେ ଚକ୍କର କାଟୁଛନ୍ତି । ଭାଗ୍ୟ ଭଲ, ସେମାନଙ୍କ ହିଂସ୍ର ଦୃଷ୍ଟି କଇଁଛ ପିଠିରେ ଥିବା ଅଣ୍ଡା ଉପରେ ପଡ଼ିଲାନି । ନଚେତ୍—ସମୟଯନ୍ତ୍ର ସହିତ ଦୁଇ ବୈଜ୍ଞାନିକ ସେଠୁ ହିଁ ଅଦୃଶ୍ୟ ହୋଇଯାଇଥାନ୍ତେ ।

କଇଁଛ ଯାଇ ହ୍ରଦକୂଳରେ ପହଞ୍ଚିଥିଲା । ଠିକ୍ ଏତିକିବେଳେ ହଠାତ ଗୋଟେ ରାକ୍ଷସଜୀବ ପାଣିରୁ ଉଠିଆସିଲା । ତା' ହିଂସ୍ର ଦୃଷ୍ଟି କଇଁଛ ଉପରେ । କଇଁଛ ତରକିଗଲା । ସଙ୍ଗେ ସଙ୍ଗେ ସେ ତା' ମୁଣ୍ଡ ଓ ଗୋଡ଼କୁ ଖୋଳପା ଭିତରେ ପୂରାଇ ମଲାପରି ପଡ଼ିରହିଲା । ତା'ପରେ ସେ ରାକ୍ଷସ-ଡାଇନୋସରର ଦୃଷ୍ଟି ପଡ଼ିଗଲା କଇଁଛ ପିଠିରେ ଥିବା ବିରାଟ ଅଣ୍ଡାଟି ଉପରେ । ସେ ମାଡ଼ିଆସିଲା ଅଣ୍ଡାକୁ ଲକ୍ଷ୍ୟ କରି ।

ଦୁଇ ବିଜ୍ଞାନୀ ଜାଣି ପାରିଲେ, ଏଠୁ ଆଉ ନିସ୍ତାର ନାହିଁ । ମରଣ ନିଶ୍ଚିତ । ଯେତେ ଶୀଘ୍ର ସମ୍ଭବ ସମୟ-ଯନ୍ତ୍ର ଧରି ଉଡ଼ିଯିବା ହିଁ ହେବ ବୁଦ୍ଧିମାନର କାମ । ଦୁଇ ବନ୍ଧୁ ଠରାଠରି ହେଲେ । ଆଉ ଆଗପଛ ଚିନ୍ତା କରିବାକୁ ବେଳ ନଥିଲା । ଦୁହେଁ ଖପାଖପ୍ ଚଢ଼ିଗଲେ 'ସମୟ-ଯନ୍ତ୍ର' ଉପରକୁ । ପ୍ରଫେସର ସଙ୍ଗେ ସଙ୍ଗେ ତା' ଢାଙ୍କୁଣୀ ବନ୍ଦ କରିଦେଲେ ଏବଂ କୋଡ-ୱାର୍ଡ଼ ଦେଇ ଷ୍ଟାର୍ଟ କଲେ ସମୟ-ଯନ୍ତ୍ର । ସମୟ-ଯନ୍ତ୍ର ଉଡ଼ିବାକୁ ପ୍ରସ୍ତୁତ । ଠିକ୍ ଏତିକିବେଳେ ଡାଇନୋସର ଆସି ଖପ୍ କିନା ମାଡ଼ି ବସିଲା ସମୟ-ଯନ୍ତ୍ରକୁ । ଅଣ୍ଡାକାର ଯନ୍ତ୍ରର ଉପରଫାଳଟା ଭାଙ୍ଗି ତା ପାଟିରେ ରହିଗଲା । ସେତିକିବେଳକୁ ଶ୍ରୀକାନ୍ତ ଭବିଷ୍ୟଯାତ୍ରା ପାଇଁ ଥିବା ବଟନକୁ ଚିପିବାକୁ ଯାଉଥିଲେ । ଡାଇନୋସର ବିରକ୍ତ ହୋଇ ଦୂରକୁ ଛାଟିଦେଲା ସେ ଇସ୍ପାତ ଢାଙ୍କୁଣୀଟାକୁ । ସେଇଟା ଥିଲା ତା' ପାଇଁ ଅଖାଦ୍ୟ । ଅସଲ ଖାଦ୍ୟ ତ ସମୟ-ଯନ୍ତ୍ର ଭିତରେ । ହଠାତ୍ ସେ ପ୍ରଫେସରଙ୍କ ମୁଣ୍ଡକୁ ମାଡ଼ିବସିଲା । ସେତେବେଳକୁ ଶ୍ରୀକାନ୍ତ ଧଳା ବଟନକୁ ଚିପି ସାରିଥିଲେ ।

ଡାଇନୋସର ପ୍ରଫେସରଙ୍କ ମୁଣ୍ଡ ଧରି କୁକୁଡ଼ା ଚିଆଁକୁ ଚିଲ ଝାମ୍ପିବା ପରି ଉଠାଇନେଲା ଉପରକୁ । ଚାହୁଁଚାହୁଁ ଜଣେ ଅସହାୟ ମଣିଷର ଆର୍ତ୍ତ ଚିତ୍କାର ସାଢ଼େ

ଛ'କୋଟି ବର୍ଷ ତଳର ଭୀଷଣ ଜଙ୍ଗଲ ଭିତରେ ହଜିଗଲା । ସେତେବେଳକୁ ସମୟଯନ୍ତ୍ର ଅଦୃଶ୍ୟ ହୋଇଯାଇଥାଏ କଇଁଛ ପିଠି ଉପରୁ ।

× × × ×

ପ୍ରଫେସର ଆନନ୍ଦ କୁମାରଙ୍କ ଗବେଷଣା କକ୍ଷରେ ହଠାତ ଗୋଟେ ବିସ୍ଫୋରଣ ହେବାପରି ମନେହେଲା । ଶ୍ରୀକାନ୍ତ ଛିଟ୍‌କି ପଡ଼ିଥିଲେ ଚଟାଣ ଉପରେ । ଢାଙ୍କୁଣୀ ନଥିବା ସମୟ-ଯନ୍ତ୍ରର ଭଙ୍ଗା କଳକବ୍‌ଜାଗୁଡ଼ିକ ବିଛେଇ ହୋଇ ପଡ଼ିଥିଲା କକ୍ଷସାରା । କିଛି ସମୟ ପରେ ଶ୍ରୀକାନ୍ତ ପ୍ରକୃତିସ୍ଥ ହେଲେ ଏବଂ ଉଠିଲେ । ମନେ ହେଉଥିଲା ସେ ସ୍ୱପ୍ନ ଦେଖି ଉଠୁଛନ୍ତି । ସ୍ୱପ୍ନର ପ୍ରତ୍ୟେକଟି ଘଟଣା ସେ ମନେପକାଇବାକୁ ଚେଷ୍ଟାକଲେ । କିନ୍ତୁ ତାହା ଥିଲା ନିହାତି ବାସ୍ତବ । ତାଙ୍କ ଅଙ୍ଗେନିଭା ଘଟଣା । ଶିହିରି ଉଠିଲେ ସେ । ସୂତାଖିଅକରେ ଜୀବନ ନେଇ ସେ ଡାଇନୋସର ମୁହଁରୁ ବର୍ତ୍ତିଆସିଲେ ସତ; ହେଲେ ବଞ୍ଚାଇ ପାରିଲେନି ସମୟଯନ୍ତ୍ରର ଉଦ୍ଭାବକ ପ୍ରଖ୍ୟାତ ବୈଜ୍ଞାନିକ ଆନନ୍ଦ କୁମାରଙ୍କୁ ।

କହିବା ବାହୁଲ୍ୟ, ଏବେ ବି ପ୍ରଫେସରଙ୍କ ଗବେଷଣା କକ୍ଷରେ ସେ ଅଦ୍ଭୁତ ସମୟ-ଯନ୍ତ୍ରର ଭଙ୍ଗା ଖଣ୍ଡଗୁଡ଼ିକ ଇତସ୍ତତଃ ପଡ଼ିରହିଛି । ଏ ଗଳ୍ପଟି ପଢ଼ି ଯଦି କୌଣସି ବୈଜ୍ଞାନିକ ବନ୍ଧୁ ଯନ୍ତ୍ରଟିକୁ ସଜାଡ଼ି ଦେଇ ପାରିବେ, ତା'ହେଲେ ଏ ଘଟଣାଟି ହେବ ଚଳିତ ସହସ୍ରାବ୍ଦୀ ପାଇଁ ସବୁଠୁ ଚମକପ୍ରଦ ଘଟଣା ।



# 'କୁହୁକ ଦ୍ୱୀପ'ର ରାଜା

ଆମେରିକୀୟ ରୋବୋଟ ଉତ୍ପାଦନ କେନ୍ଦ୍ର (ROBOT INSTITUTE OF AMERICA) ର ସ୍ୱନାମଧନ୍ୟ ବିଜ୍ଞାନୀ ପ୍ରଫେସର 'ମାଇକେଲ ବ୍ରାଉନ୍' ଭାରି ବ୍ୟସ୍ତ ଜଣାପଡୁଥିଲେ । ସେ ଥିଲେ ସେହି ସଂସ୍ଥାର ସବୁଠୁ ଅଭିଜ୍ଞ ଓ ଦକ୍ଷ ବୈଜ୍ଞାନିକ । ନିଜ ନିପୁଣ ହାତରେ ସେ ଶହେରୁ ଅଧିକ ରୋବୋଟ ତିଆରି କରି ଛାଡ଼ିଚନ୍ତି । ଖୋଦ ଆମେରିକା ଏବଂ ପୃଥିବୀର ଅନ୍ୟାନ୍ୟ ଦେଶରେ ଏବେ ବି ସେ ରୋବୋଟ୍‌ମାନେ ନିର୍ଭୁଲ ଭାବେ କାମ କରୁଛନ୍ତି । ସେମାନେ ସବୁ ସାଧାରଣ ରୋବୋଟ୍ । ସେମାନଙ୍କୁ ପ୍ରୋଗ୍ରାମିଂ କରାଯାଇଛି ସର୍ବାଧିକ ପଚାଶ ବର୍ଷ ପାଇଁ ।

ଆଜି ପ୍ରଫେସର ବ୍ରାଉନଙ୍କ ବ୍ୟସ୍ତତାର କାରଣ, ସେ ତାଙ୍କ ଜୀବନର ସବୁଠୁ ମହତ୍ତ୍ୱପୂର୍ଣ୍ଣ କାମଟି ପୂରା କରିବାକୁ ଯାଉଛନ୍ତି । ପ୍ରଫେସରଙ୍କର ଅନେକଦିନରୁ ସ୍ୱପ୍ନ ଥିଲା, ଅତି ବୁଦ୍ଧିମାନ ରୋବୋଟ୍ ଟିଏ ତିଆରି କରିବେ । ସେ ସ୍ୱପ୍ନ ଆଜି ସାକାର ହେବାକୁ ଯାଉଛି । ଆଉ ମାତ୍ର କେତେଘଣ୍ଟା ପରେ ତାଙ୍କ ପ୍ରୟୋଗଶାଳାରେ ଜନ୍ମ ନେବ ପୃଥିବୀର ଏକମାତ୍ର ମହାବୁଦ୍ଧିମାନ ଯନ୍ତ୍ରମଣିଷ ! ପ୍ରଫେସର ତା' ନାଁ 'ରୋବିନ' ରଖିବେ ବୋଲି ଠିକ୍ କରିଛନ୍ତି । ଅର୍ଥାତ୍ 'ରୋବୋଟ ଉଇଥ ଏକସ୍‌ଟ୍ରା ଇନଟେଲିଜେନ୍ସ' (ROBOT WITH EXTRA INTELLIGENCE) ।

ପ୍ରଫେସର ବ୍ରାଉନ୍ ଏବଂ ତାଙ୍କ ବିଶ୍ୱସ୍ତ ସହଯୋଗୀ ଡ. ଅଞ୍ଜନ ଦୀର୍ଘଦିନ ଧରି ଲାଗିଥିଲେ ଏ କାମରେ । ଯନ୍ତ୍ରମଣିଷର ସମସ୍ତ ଯାନ୍ତ୍ରିକ କାରିଗରୀ କାମ ସରିଗଲା । ବାକିଅଛି କେବଳ ତା' ମସ୍ତିଷ୍କ କେନ୍ଦ୍ର ବା 'ବ୍ରେନ୍-ସେଣ୍ଟର' ଖଞ୍ଜିବା କାମଟି । ସେଥିପାଇଁ ସେ ଗୋଟେ ବିଶେଷ ଶକ୍ତି ସମ୍ପନ୍ନ 'ସୁପରବ୍ରେନ' ତିଆରି କରି ରଖିଛନ୍ତି । ମସ୍ତିଷ୍କଟିକୁ 'ରୋବିନ'ର ଖପୁରି ଭିତରେ ଖଞ୍ଜିବା ପୂର୍ବରୁ ଶେଷଥର ପାଇଁ ତାର ପରୀକ୍ଷା ନିରୀକ୍ଷା କରୁଥାନ୍ତି ବିଜ୍ଞାନୀଦ୍ୱୟ ।

ଏତିକିବେଳେ ପିଅନ୍ ଚିଠା ଖଣ୍ଡେ ଆଣି ତାଙ୍କୁ ଦେଖାଇଲା । ଚିଠାଟି ଦେଖି ପ୍ରଫେସର ଖୁସିରେ ଏକ ପ୍ରକାର ଚିହାର କରି ଧାଇଁଗଲେ ଦୁଆର ଆଡ଼କୁ । ବାହାରେ ଅପେକ୍ଷା କରିଥିଲେ 'ଜାତୀୟ ଯାଦୁବିଜ୍ଞାନ କେନ୍ଦ୍ର'ର ମୁଖ୍ୟ, ପ୍ରଫେସର ଜନ୍ ବିମସ୍ । ବ୍ରାଉନଙ୍କ ସ୍କୁଲଦିନର ସାଙ୍ଗ । ଅନେକ ଦିନ ପରେ ଦେଖା । କୃଷ୍ଣ-ସୁଦାମା ପରି ଦୁଇ ବନ୍ଧୁ କିଛି ସମୟ ପାଇଁ ହଜିଗଲେ ପରସ୍ପରର ନିବିଡ଼ ଆଲିଙ୍ଗନ ଭିତରେ ।



ବ୍ରାଉନ ପଚାରିଲେ, ''କ'ଣ ବନ୍ଧୁ, ମୋ' କଥା ଏତେଦିନକେ ମନେପଡ଼ିଲା ?''

ବିମସ୍ ସାହେବ ହସିହସି କହିଲେ, ''ତମେ ତ' ସବୁବେଳେ ମୋ' ହୃଦୟ ଭିତରେ ହିଁ ଅଛ ବ୍ରାଉନ୍ । ଆଜି ଗୋଟେ ବିଶେଷ କୌତୂହଳ ନେଇ ମୁଁ ତୁମ ପାଖକୁ ଆସିଛି ।''

"କୌତୂହଳ ! ଆରେ...ତମେ ତ ଜଣେ ବିଶ୍ୱବିଖ୍ୟାତ ଯାଦୁକର । ସାରାଦୁନିଆର ଲୋକେ ତମ ଯାଦୁର କରାମତି ଜାଣିବାପାଇଁ କୁତୂହଳି । ତମପାଇଁ ପୁଣି କୌତୂହଳର କାରଣ କ'ଣ ?"

ବିମସ୍ ସାହେବ କହିଲେ, "ବନ୍ଧୁ, ମୁଁ ଜାଣିବାକୁ ପାଇଲି, ତମେ କୁଆଡ଼େ ଗୋଟେ ଅତି ବୁଦ୍ଧିମାନ ରୋବୋଟ ତିଆରି କରୁଛ ! ତା ନାଁ ରଖିଛ 'ରୋବିନ' । ତମ ରୋବୋଟମାନଙ୍କ କାରବାର ଦେଖିବାପାଇଁ ଆଗରୁ ହିଁ ମୋ ମନରେ ବିଶେଷ କୌତୂହଳ ଥିଲା । ଏବେ ଯେତେବେଳେ 'ଅତି ବୁଦ୍ଧିମାନ' ଖବରଟା ଶୁଣିଲି, ଆଉ ଧୈର୍ଯ୍ୟଧରି ରହିପାରିଲିନି । ଦେଖିବାପାଇଁ ଚାଲି ଆସିଲି । କ'ଣ ତମର ସେ 'ରୋବିନ' ମହାଶୟଙ୍କ ସହିତ ମୋ' ପରିଚୟ କରାଇ ଦେବନି ?"

"ନିଶ୍ଚୟ ବନ୍ଧୁ...ନିଶ୍ଚୟ, ଭିତରକୁ ଆସ । ପ୍ରଥମେ ତମେ ଡ. ଅଞ୍ଜନଙ୍କ ସହିତ ମିଶ । ଏ କାମରେ ସେ ମୋର ଏକମାତ୍ର ବିଶ୍ୱସ୍ତ ସହଯୋଗୀ ।" ପ୍ରଫେସର ଡ. ଅଞ୍ଜନଙ୍କ ସହିତ ତାଙ୍କର ପରିଚୟ କରାଇଦେଲେ । ଡ. ଅଞ୍ଜନ ବିମସ୍ ସାହେବଙ୍କ ସହିତ କରମର୍ଦ୍ଦନ କଲେ । କହିଲେ, "ସାର୍, ମୁଁ ଆପଣଙ୍କର ଜଣେ ବଡ଼ ପ୍ରଶଂସକ । ପିଲାଦିନୁ ଯାଦୁବିଦ୍ୟା ପ୍ରତି ମୋର ଦୁର୍ବଳତା ଅଛି । ଭାବୁଛି, ମୁଁ ଯଦି ବୈଜ୍ଞାନିକ ନ' ହେଇଥାନ୍ତି, ନିଶ୍ଚୟ ଜଣେ ଯାଦୁକର ହିଁ ହେଇଥାନ୍ତି । ଏବେ ବି ମୋ' ମନରେ ଅଛି, ଯଦି ଏ ଗବେଷଣାରୁ କେବେ ମୁକ୍ତି ମିଳେ, ଆପଣଙ୍କ ଚେଲା ହୋଇ ରହିବି ।" ଡ. ଅଞ୍ଜନଙ୍କ କଥ ଶୁଣି ଦୁଇବନ୍ଧୁ ହସିବାକୁ ଲାଗିଲେ ।

ବିମସ୍ ସାହେବଙ୍କ ହାତରେ ଗୋଟେ ସୁଦୃଶ୍ୟ ମୋଟା ବହି ଥିଲା । ଡ. ଅଞ୍ଜନ ବହିଟା ତାଙ୍କ ହାତରୁ ଆଣି ଦୁଇ-ଚାରି ପୃଷ୍ଠା ଓଲଟାଇ କହିଲେ, "ବାଃ...ଏ'ତ ବଡ଼ ଚମତ୍କାର 'ଯାଦୁ ବିଜ୍ଞାନ' ! ସାର୍, ଦୟାକରି ବହିଟା ଗୋଟେ ରାତି ପାଇଁ ମୋତେ ଦେଇପାରିବେ ?"

ବିମସ୍ ସାହେବ ଅଞ୍ଜନଙ୍କ ହାତରୁ ବହିଟା ଏକପ୍ରକାର ଝାମ୍ପିନେଇ କହିଲେ, "କ୍ଷମା କରିବ ବନ୍ଧୁ, ଏ ବହି ସର୍ବସାଧାରଣ ପଢ଼ିବା ମନା । ବଜାରରେ ଏ କିଣିବାକୁ ମିଳିବନି । ସରକାର ମଧ୍ୟ ଏ ବହି ଉପରେ କଟକଣା ଲଗାଇଛନ୍ତି । ତେଣୁ ଯାକୁ କୌଣସିମତେ ତମକୁ ଦେଇପାରିବିନି । ମୁଁ ଏଥିପାଇଁ ଦୁଃଖିତ ।" ଏହା କହି ସେ ବହିଟାକୁ ଯତ୍ନରେ ନେଇ ଟେବୁଲ ଉପରେ ରଖିଲେ ।

ପ୍ରଫେସର ବ୍ରାଉନ୍ କଥାଟାକୁ ହାଲ୍‌କା କରିବାକୁ ଯାଇ କହିଲେ, ''ଠିକ୍ ଅଛି ବନ୍ଧୁ ! ସୁଯୋଗ ମିଳିଲେ, ଆମେ ଦୁଇଜଣଯାକ ଯାଇ ତୁମଠୁ ଯାଦୁବିଦ୍ୟା ଶିଖିବୁ । ଏବେ ତୁମେ ଯାଅ 'ରୋବିନ' ସହିତ ପରିଚୟ ହୁଅ ।'' ଏହା କହି ସେ ତାଙ୍କ ହାତରେ ଥିବା ରିମୋଟ୍‌ର ଗୋଟେ ବଟନ୍ ଚିପିଲେ । ଯାଦୁକଲା ପରି ହଠାତ୍ ସାମନାକାନ୍ଥଟା ଦୁଇଫାଳ ହୋଇ



ଦୁଇଆଡ଼କୁ ଘୁଞ୍ଚିଗଲା । ତା' ଭିତରୁ ଠକ୍-ଠକ୍ ପାହୁଣ୍ଡ ପକାଇ ବାହାରି ଆସିଲା ଗୋଟେ ବିଚିତ୍ର ଯନ୍ତ୍ରମଣିଷ । ସିଧା ଆସି ସେ ବିମସ୍ ସାହେବଙ୍କ ସହିତ କରମର୍ଦ୍ଦନ କଲା ।

ଜନ୍ ବିମସ୍ ଜଣେ ପ୍ରସିଦ୍ଧ ଯାଦୁକର ହେଲେ ମଧ୍ୟ ସାମନାସାମନି କେବେ ମଣିଷ ଛାଞ୍ଚ ରୋବୋଟ୍ ଟିଏ ଦେଖିନଥିଲେ । ଆଶ୍ଚର୍ଯ୍ୟ ଲାଗିଲା ତାଙ୍କୁ । ଶକ୍ତ ଆଲୁମିନିଅମ ଦଣ୍ଡ ଆଉ ପାଇପ୍‌ରେ ଗଢ଼ା ତା' ହାତଗୋଡ଼, ଆଣ୍ଠୁ-ଗଣ୍ଠିର କବ୍‌ଜା, ଚକ୍‌ଚକ୍ କରୁଥିବା ଆଖି, ଠା ଠକ୍ ଠକ୍ ଚାଲି, ବଡ଼ କୌତୂହଳୀ ହୋଇ ଅନାଇ ରହିଲେ ବିମସ୍ ସାହେବ ।

ପ୍ରଫେସର ବ୍ରାଉନ କହିଲେ, "ଏବେ ବି ଏ' ଜଣେ ସାଧାରଣ ରୋବୋଟ୍ ଯାକୁ ମୁଁ ଅତିବୁଦ୍ଧିମାନ 'ରୋବିନ'ରେ ପରିଣତ କରିବାକୁ ଯାଉଛି ।"

ବିମସ୍ ସାହେବ ପଚାରିଲେ, "ଆଚ୍ଛା ବନ୍ଧୁ, ମୋତେ ଟିକେ ବୁଝାଇଦେଲ, ସାଧାରଣ 'ରୋବୋଟ' ଆଉ ତମ 'ରୋବିନ', ଏ' ଦୁହିଙ୍କ ଚରିତ୍ର ଆଉ କାର୍ଯ୍ୟଦକ୍ଷତା ଭିତରେ ଫରକ କଣ ?"

ପ୍ରଫେସର ବୁଝାଇଲେ, "ସାଧାରଣ ରୋବୋଟମାନଙ୍କୁ ନିର୍ଦ୍ଦିଷ୍ଟ କେତେକ କାମ ପାଇଁ ପ୍ରୋଗ୍ରାମିଂ କରାଯାଇଥାଏ । ସେଥିରେ ଜଣେ 'ରୋବୋଟ' ତା'ର ଯେତିକି କାମ କରିବା କଥା ସେତିକି ହିଁ କରିବ । ମାଲିକ ଯଦି ତାକୁ ଅନ୍ୟ କାମରେ ଲଗାଇବାକୁ ଚାହିଁବ, ହୋଇ ପାରିବନି । ଧର ଜଣେ ରୋବୋଟ୍‌ଟିଏ ରଖିଛନ୍ତି । ତା' କାମ ରୋଷେଇ କରିବା, ଘର ଝାଡୁଦେବା ଏବଂ ଅତିଥି ସତ୍କାର କରିବା । ସେ ଏଇ ତିନୋଟି କାମ ହିଁ କରିବ । ଘରେ ଯଦି ଚୋର ପଶିଲା, ଏ 'ରୋବୋଟ' ଦେଖୁଥିବ ପଛେ କିଛି କରିପାରିବନି । କାହିଁକିନା, ତା'ର ସେ ପ୍ରକାର ପ୍ରୋଗ୍ରାମିଂ ନଥାଏ । ତେଣୁ ଏ କାମ ପାଇଁ ତାକୁ ରି-ପ୍ରୋଗ୍ରାମିଂ କରିବାକୁ ପଡ଼େ କିମ୍ବା ଚୋରଧରା ରୋବୋଟଟିଏ ରଖିବାକୁ ପଡ଼ିବ ।

"ତା' ମାନେ ତୁମ 'ରୋବିନ୍' କଣ ସବୁ କାମକୁ ପାରିବ ?" ବିମସ୍ କୌତୂହଳୀ ହୋଇ ପ୍ରଶ୍ନ କଲେ । ପ୍ରଫେସର କହିଲେ, "କେବଳ ସେତିକି ନୁହେଁ ବନ୍ଧୁ, ତମେ ରୋବିନ୍ ବିଷୟରେ ଯେତିକି ଭାବୁଚ ସେ ତାଠୁ ଯଥେଷ୍ଟ ଅଧିକ କିଛି କରିପାରିବ ବୋଲି ଜାଣ । ତା' ମସ୍ତିଷ୍କରେ ଏପରି ଶକ୍ତି ଭରିଦିଆଯାଉଛି ଯେ ଅନେକ ଅସମ୍ଭବ କାମକୁ ସେ ଅତିଶୀଘ୍ର ଓ ସହଜରେ କରିପାରିବ । ଜଣେ ସାଧାରଣ ମଣିଷଠାରୁ ଶହେ ଗୁଣ ଅଧିକ ବେଗରେ ସେ ଭାବିପାରିବ ଏବଂ ଉଚିତ ନିର୍ଣ୍ଣୟ ମଧ୍ୟ ନେଇପାରିବ । ଏପରିକି କୌଣସି ଘଟଣା ଘଟିବା ଆଗରୁ ସେ ସମ୍ପର୍କରେ ସେ ଜାଣିପାରିବ ଏବଂ ଏହାର ସାମଧାନର ବାଟ ତତ୍‌କ୍ଷଣାତ୍ ଦେଖାଇଦେଇ ପାରିବ । 'ରୋବିନ'ର ମାନସିକ ଶକ୍ତିକୁ ଯଦି ଠିକ୍ ବାଟରେ ଲଗାଯାଏ

ତା'ହେଲେ ସମାଜର ଅଶେଷ ଉପକାର ହେବ । 'ରୋବିନ୍'ର ସବୁଠୁ ବଡ଼ ଗୁଣ ହେଲା, ସେ ହେବ ସ୍ୱାଧୀନଚେତା ଏବଂ କିଛି ନୂଆ ଶିଖିବା ଓ କରିବା ସାମର୍ଥ୍ୟ ତା ପାଖରେ ରହିବ ପ୍ରଚୁର । ଏପରିକି ସେ ନିଜ 'ଅତି ବୁଦ୍ଧି' ବଳରେ ତା'ପରି 'ରୋବିନ' ମଧ୍ୟ ସୃଷ୍ଟି କରିଦେଇ ପାରିବ ।''

''ବାଃ...ତା'ହେଲେ ତ ଚମତ୍କାର ହେଇଗଲା !'' ବିମସ୍ ସାହେବ ଖୁସିରେ ନିଜ ଆସନରୁ ଉଠି ତାଳି ମାରିବାକୁ ଲାଗିଲେ । ବ୍ରାଉନ୍ କହିଲେ, ''ବସ ବନ୍ଧୁ, ଧୈର୍ଯ୍ୟ ଧରି ଆଉ ଦଶମିନିଟ୍ ବସ । ତୁମ ଆଖିଆଗରେ ହିଁ ମୁଁ ତା' 'ସୁପରବ୍ରେନ' ଖଞ୍ଜୁଚି, ଦେଖ ।'' ଏହା କହି ସେ ଯନ୍ତ୍ରମଣିଷର ବାଁ କାନଟାକୁ ଅଳ୍ପ ମୋଡ଼ିଦେଲେ । ଫରୁଆର ଢାଙ୍କୁଣୀ ଖୋଲିବାପରି ସାଏଁ କିନା ତା' ଖପୁରିର ଉପର ଫାଳଟା ଉଠିଗଲା । ଡ. ଅଞ୍ଜନଙ୍କ ହାତରେ ଚକ୍‌ଚକ୍ କରୁଥିଲା ସେହି ଅଦ୍ଭୁତ ଯାନ୍ତ୍ରିକମସ୍ତିଷ୍କଟି । ପ୍ରଫେସର ତାକୁ ଆଣି ଯନ୍ତ୍ରମଣିଷର ଖପୁରି ଭିତରେ ପୂରାଇଲେ । ତା'ପରେ ସେ ତା' ଭିତରେ କିଛି ଯୋଡ଼ାଯୋଡ଼ି ମୋଡ଼ାମୋଡ଼ି କଲେ, ଢାଙ୍କୁଣୀ ବନ୍ଦ କରିଦେଲେ । ରୋବୋଟ୍‌ର ଡାହାଣ କାନବାଟେ ସରୁ ତାରଟିଏ ବାହାରି ଆସିଲା । ସେହି ତାରର ଗୋଟିଏ ମୁଣ୍ଡକୁ ନେଇ ପାଖରେ ଥିବା ଗୋଟେ ମେସିନ୍‌ର ପ୍ଲଗ୍ ସହିତ ସଂଯୋଗ କରି ସୁଇଚ ଅନ୍ କଲେ ।

ବ୍ରାଉନ୍ କହିଲେ, ''ବାସ୍ ବନ୍ଧୁ, ମୋ' କାମ ସରିଲା । ଏବେ ଆଠ ଘଣ୍ଟା ଅପେକ୍ଷା କରିବାକୁ ପଡ଼ିବ । ସୁପରବ୍ରେନ୍ ପୂରାରୂପେ ଚାର୍ଜ୍ ହେବାପାଇଁ ଆଠ ଘଣ୍ଟା ଲାଗିବ । ତା'ପରେ ତାହା କାର୍ଯ୍ୟକ୍ଷମ ହୋଇଯିବ ଏବଂ ଏ ସାଧାରଣ ରୋବୋଟ୍‌ଟି ପରିଣତ ହୋଇଯିବ ମହାବୁଦ୍ଧିମାନ 'ରୋବିନ୍'ରେ ।

ବିମସ୍ ସାହେବ ଘଡ଼ିଦେଖି କହିଲେ, ''ଏବେ ତ ସଂଧ୍ୟା ସାତଟା । ଆମକୁ ଏଠାରେ କଣ ରାତି ତିନିଟା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ ?''

''ନା, ଏଠି ବସି ରହିବା ଦରକାର ନାହିଁ । ଏବେ ଆମେ ଘରକୁ ଯାଇ ବିଶ୍ରାମ ନେବା । ସକାଳେ ଆସି 'ରୋବିନ'ର କାର୍ଯ୍ୟଦକ୍ଷତା ନିରୀକ୍ଷଣ କରିବା ।'' ପ୍ରଫେସର କହିଲେ । ତା'ପରେ ତିନିହେଁ ଉଠିଲେ । ପ୍ରୟୋଗଶାଳାର ଚାବି ବନ୍ଦ୍ କରି ଯାଇ ନିଜ ନିଜ ଗାଡ଼ିରେ ବସିଲେ । ଡ. ଅଞ୍ଜନ ଏବଂ ପ୍ରଫେସର ବ୍ରାଉନଙ୍କ ବସା ସହରର ଦୁଇ ବିପରିତ ଦିଗରେ । ତେଣୁ ଡ. ଅଞ୍ଜନ ପ୍ରଥମେ ଶୁଭରାତ୍ରୀ ଜଣାଇ ବିଦାୟ ନେଲେ । ଦୁଇବନ୍ଧୁ ଚାଲିଲେ ଗୋଟିଏ ଗାଡ଼ିରେ । ପ୍ରଫେସରଙ୍କ ଗାଡ଼ି ତାଙ୍କ ଘର ସାମନାରେ

ଅଟକିବା ବେଳକୁ ରାତି ଆଠଟା । ବିମସ୍ ସାହେବ ହଠାତ୍ ଚମକି ଉଠିଲେ । ସେ ଗୋଟେ ବିରାଟ ଭୁଲ୍ କରିପକାଇଥିଲେ । ପ୍ରଫେସରଙ୍କୁ କହିଲେ, ''ବନ୍ଧୁ, ମୋ ଦୁର୍ମୂଲ୍ୟ 'ଯାଦୁବିଜ୍ଞାନ' ବହିଟା ତମ ପ୍ରୟୋଗଶାଳା ଭିତରେ ରହିଗଲା । ଏବେ କରିବା କ'ଣ ?''

ପ୍ରଫେସର ତାଙ୍କୁ ପ୍ରବୋଧନା ଦେଇ କହିଲେ, ''ଏଥିରେ ବ୍ୟସ୍ତ ହେବାର କଣ ଅଛି ? ଘରଭିତରେ ତ ଅଛି ନା ? ତା' ଛଡ଼ା ସେ ରୁମ୍‌ର ଚାବି, ଗୋଟେ ମୋ' ପାଖରେ ଏବଂ ଅନ୍ୟଟି ଅଛି ଡ. ଅଞ୍ଜନଙ୍କ ପାଖରେ, ଭୟ କରନି । କେହି ନେବେନି ତମ ବହି ।''

ବିମସ୍ ସାହେବ କହିଲେ, ''ଡ. ଅଞ୍ଜନଙ୍କ ପାଖରେ ଚାବି ଅଛି, ଭୟ ତ ସେଥିପାଇଁ । ତାଙ୍କ କାର୍ଯ୍ୟକଳାପ ଉପରେ କାହିଁକି କେଜାଣି ମୋର ସନ୍ଦେହ ହେଉଚି । ମୋ' ବହିଟାକୁ ସେ ବାରମ୍ବାର କେମିତି କଣେଇ ଚାହୁଁଥିଲେ ତମେ ଲକ୍ଷ୍ୟ କରିଛ ? ଭାବୁଚି ରାତିରେ ଆସି ସେ ବହିଟାକୁ ମାରିନେବେ ।''

ପ୍ରଫେସର ବୁଝାଇଲେ, ''ଆରେ ଭାଇ, ସେ ଜଣେ ସଚ୍ଚା ଭାରତୀୟ । ତୁମେ ଯାହା ସନ୍ଦେହ କରୁଚ, ସେପରି ଚରିତ୍ରର ମଣିଷ ସେ ନୁହଁନ୍ତି । ଏବେ ତମେ ଖିଆପିଆ କରି ନିଶ୍ଚିନ୍ତରେ ଶୋଇପଡ଼ । ସକାଳେ ଦେଖିବା ।''

ଦୁଇବନ୍ଧୁ ଶୋଇବାକୁ ଗଲେ । 'ରୋବିନ'ର ସଫଳତାର ସ୍ୱପ୍ନ ଦେଖି ଦେଖି ପ୍ରଫେସର ଶୋଇପଡ଼ିଲେ । କିନ୍ତୁ ବହି କଥା ଭାବିଭାବି ଛଟ୍‌ପଟ୍ ହେବାକୁ ଲାଗିଲେ ବିମସ୍ । ଖୁବ୍ ଡେରିରେ ନିଦ ହେଲା ତାଙ୍କୁ । ଠିକ୍ ରାତି ଚାରିଟା ବେଳକୁ ହଠାତ୍ ଟେଲିଫୋନ୍ ଘଣ୍ଟି ଶବ୍ଦରେ ଦୁଇବନ୍ଧୁଙ୍କ ନିଦ ଭାଙ୍ଗିଗଲା । ପ୍ରଫେସର ଫୋନ୍ ଉଠାଇଲେ, ଅପର ପାଖରୁ ତାଙ୍କ ପ୍ରୟୋଗଶାଳାର ଚୌକିଦାର ବ୍ୟତିବ୍ୟସ୍ତ ହୋଇ କହିଲା, ''ସାର୍...'ରୋବିନ୍' ଚୋରି ହୋଇଯାଇଛି । ଶୀଘ୍ର ଆସନ୍ତୁ ।'' ଏ ଦୁଃସମ୍ବାଦ ଶୁଣି ପ୍ରଫେସରଙ୍କ ହାତରୁ ରିସିଭର ଖସି ପଡ଼ିଲା ।

ପୃଥିବୀର ସବୁଠୁ ବୁଦ୍ଧିମାନ ଯନ୍ତ୍ରମଣିଷ 'ରୋବିନ' ! ତା'ର ପୁଣି ଚୋରି ! ଘଟଣାଟିକୁ ସହଜରେ ଗ୍ରହଣ କରିପାରିଲେନି ପ୍ରଫେସର ବ୍ରାଉନ । ତଥାପି ମନରେ ଆଶଙ୍କା ଜାଗିଉଠିଲା । ସଙ୍ଗେସଙ୍ଗେ ସେ ଗାଡ଼ି ବାହାର କରି ଛୁଟିଲେ ପ୍ରୟୋଗଶାଳା ଅଭିମୁଖେ । ସାଙ୍ଗରେ ଥିଲେ ତାଙ୍କର ଯାଦୁକର ବନ୍ଧୁ ବିମସ୍ ।

ପ୍ରଫେସର ଚାବିଖୋଲି ପ୍ରୟୋଗଶାଳା ଭିତରେ ପଶିଲେ । ଦେଖିଲେ, ସତକୁସତ ରୋବିନ୍ ନାହିଁ । ସେ ବ୍ୟସ୍ତ ହୋଇ ଚାରିଆଡ଼େ ଖୋଜିବାକୁ ଲାଗିଲେ । ପ୍ରୟୋଗଶାଳାର ଅନ୍ଦି-କନ୍ଦି, ତଳ-ଉପର, କପବୋର୍ଡ଼ ଭିତର, ସବୁ ଖୋଜି ପକାଇଲେ କିନ୍ତୁ ଆଶ୍ଚର୍ଯ୍ୟର କଥା, କେଉଁଠି ବି ଦେଖାଗଲାନି ସେ ଯନ୍ତ୍ରମଣିଷଟା । ପ୍ରଫେସରଙ୍କ ମୁଣ୍ଡ ଚକ୍କର ଖାଇବାକୁ ଲାଗିଲା । "ହେ...ଭଗବାନ ! ଦୀର୍ଘ ପାଞ୍ଚବର୍ଷ ଅକ୍ଳାନ୍ତ ଗବେଷଣାର ଫଳ ଶେଷରେ ଚୋର ହାତକୁ ଚାଲିଗଲା !" ଏହା କହି ସେ ଅତି ଅସହାୟ ଭାବେ ମୁଣ୍ଡରେ ହାତଦେଇ ବସିପଡ଼ିଲେ ।

ବିମସ୍ ସାହେବ ଯେଉଁ ଅମୂଲ୍ୟ ବହିଟା ପାଇଁ ରାତିସାରା ଛଟପଟ୍ ହେଉଥିଲେ, ତାକୁ କିନ୍ତୁ ସେ ପାଇଗଲେ । ବହିଟାକୁ ଟେବୁଲ ଉପରୁ ଉଠାଇନେଇ ସେ କହିଲେ, "ଏ କେମିତି ସମ୍ଭବ ହେଲା ବ୍ରାଉନ୍ ! ଘରର ଝରକା, ଗ୍ରିଲ୍, କବାଟ ତ' ଚାରିଆଡୁ ବନ୍ଦ, କିଛି ଭଙ୍ଗାଭଙ୍ଗି ନ'ହୋଇ 'ରୋବିନ' ଚୋରି ହେଲା କେମିତି ?"

ବ୍ରାଉନ୍ ଭଙ୍ଗା ଗଳାରେ କହିଲେ, "ସେଇ କଥା ତ ମୁଁ ଭାବୁଛି । ରାତି ତିନିଟାରେ ତା 'ସୁପରବ୍ରେନ' କାର୍ଯ୍ୟକ୍ଷମ ହେଇଥିବ । ତା'ପରେ ହିଁ 'ରୋବିନ'ର ଚୋରି ହେଇଛି । କିନ୍ତୁ ବିମସ୍, ମୁଁ ହଲପ କରି କହିପାରେ, ରୋବିନର ସୁପରବ୍ରେନ୍ କାମ କରିବା ଆରମ୍ଭ ହେବାପରେ, ସଂସାରର ସବୁଠୁ ଧୂର୍ତ୍ତ ଚୋର ମଧ୍ୟ ତାକୁ ଚୋରେଇନେବା ସମ୍ଭବ ନୁହଁ !"

"ତା'ହେଲେ ଏ' ଘଟଣା ଘଟିଲା କେମିତି ?" ବିମସ୍ ବିସ୍ମୟ ପ୍ରକାଶ କଲେ ।

ପ୍ରଫେସର ଧୀର ଗଳାରେ କହିଲେ, "ହଁ, ତା' ବାଁ କାନ ପାଖରେ ଗୋଟେ 'ଟ୍ରିପିଙ୍ଗ୍‌ବଟନ୍' ଅଛି । ବଟନ୍‌ଟିକୁ ଚିପିଦେଲେ 'ରୋବିନ୍' ସାମୟିକ ଭାବେ ଅକାମୀ ହୋଇଯାଏ । ସେତିକିବେଳେ ଯଦି କିଏ ଚୋରେଇ ନେଇଥିବ ।" ...କିନ୍ତୁ ଏ ରହସ୍ୟ ତ ଡ. ଅଞ୍ଜନ ଏବଂ ମୋ' ଛଡ଼ା ଅନ୍ୟ କେହି ଜାଣନ୍ତିନି !

"ତା'ହେଲେ 'ରୋବିନ'କୁ ଚୋରି କରିବା ଲୋକ ଡ. ଅଞ୍ଜନ ଛଡ଼ା ଅନ୍ୟ କେହି ନୁହେଁ, ଏଥିରେ ସନ୍ଦେହ ରହିଲା କେଉଁଠି ? ଲୋକଟା ଉପରେ ମୋର ପ୍ରଥମରୁ ହିଁ ସନ୍ଦେହ ଥିଲା । ମୋ ଯାଦୁବିଜ୍ଞାନ ବହିଟା ମାରିନେବା ପାଇଁ କେମିତି କଣେଇ କଣେଇ ଚାହୁଁଥିଲା ତମେ ଲକ୍ଷ୍ୟ କରିଛଟି ? କିନ୍ତୁ ଆଶ୍ଚର୍ଯ୍ୟ ! ସେ ବହିଟା କେମିତି ନେଲାନି ?" ଯାଦୁକର ବିମସ୍ ନିଜ କଥାକୁ ଜୋର ଦେଇ କହିଲେ ।

ପ୍ରଫେସର ବ୍ରାଉନ୍ ବିରକ୍ତି ପ୍ରକାଶ କରି କହିଲେ, ''କଣ ଏମିତି ପାଗଳଙ୍କ ପରି ଗପୁଛ...ବିମସ୍ ? ସେ ପରା ନିଜ ହାତରେ ତିଆରି କରିଛନ୍ତି 'ରୋବିନ୍'କୁ, ନିଜେ ପୁଣି ଚୋରି କରିବେ କାହିଁକି ?''

ନାଁ ପାଇଁ ବନ୍ଧୁ । ପୃଥିବୀରେ ନାଁ କମେଇ ବଡ଼ଲୋକ ହେବାପାଇଁ ମଣିଷ ସବୁକିଛି କରିପାରେ । ସେ ଜଣେ ଭାରତୀୟଟି ? ରୋବିନ୍‌କୁ ନେଇ ସେ ତା' ଦେଶକୁ ଚାଲିଯାଇଥିବ । ସେଠାରେ କହିବୁଲିବ ଯେ–ସେ ସଂସାରର ସବୁଠୁ ବୁଦ୍ଧିମାନ ଯନ୍ତ୍ରମଣିଷର ଉଦ୍ଭାବକ । 'ସୁପରବ୍ରେନ୍'ର ସ୍ରଷ୍ଟା । ସେଠୁ ସେ ନୋବେଲ ପ୍ରାଇଜ୍‌ଟା ମାରିନବ ତମେ ଏଠି ଭକୁଆଙ୍କ ପରି ବସିଥା ।''

ବ୍ରାଉନ୍ ଦୃଢ଼ କଣ୍ଠରେ କହିଲେ, ''ନା, ଏମିତି କେବେ ହେବନି । ମୁଁ ମୋ' ଭାରତୀୟ ବନ୍ଧୁଟିକୁ ଭଲଭାବେ ଜାଣେ, ସେ କେଡ଼େ ସଚ୍ଚୋଟ, ଭଦ୍ର ଓ ବୁଦ୍ଧିମାନ । ଏପରି କେବେବି କରିପାରିବେନି ।''

''ମୋ' କଥା ଯଦି ମିଛ ଲାଗୁଛି, ଘଟଣାର ତଦନ୍ତ କରି ଦେଖ ।'' ବିମସ୍ କହିଲେ ।

ବ୍ରାଉନ୍ ସଙ୍ଗେ ସଙ୍ଗେ ଡ. ଅଞ୍ଜନଙ୍କ ଘରକୁ ଫୋନ ଲଗାଇଲେ । କିନ୍ତୁ ଫୋନ୍ ବାରମ୍ବାର ରିଙ୍ଗ୍ ହୋଇ କଟିଗଲା । ଜଣେ ଲୋକ ଯାଇ ଦେଖିଆସି ଖବର ଦେଲା ଯେ– ଡ. ଅଞ୍ଜନ ଘରେ ନାହାନ୍ତି, ତାଙ୍କ ଘରେ ତାଲା ଝୁଲୁଛି ।

ଏଥର ପ୍ରଫେସର ବ୍ରାଉନଙ୍କ ମନରେ ସନ୍ଦେହ ଘନୀଭୂତ ହେବାକୁ ଲାଗିଲା । ଘଟଣାଟି ସମଗ୍ର ଆମେରିକାରେ ପ୍ରଚାର ହୋଇଗଲା ଯେ–ଜଣେ ଭାରତୀୟ ବୈଜ୍ଞାନିକ ସୁପରବ୍ରେନର ଫର୍ମୁଲା ସହିତ ରୋବିନକୁ ଚୋରେଇ ନେଇଛନ୍ତି । ଚାରିଆଡ଼େ ଅନୁସନ୍ଧାନ ଚାଲିଲା । ହେଲେ ନା' ଅଞ୍ଜନ, ନା' ରୋବିନ୍ କାହାର ମଧ୍ୟ ଖୋଜ୍‌ଖବର ମିଳିଲାନି ଆମେରିକାର ଗୋଇନ୍ଦା ବିଭାଗକୁ ।

ପ୍ରଫେସର ବ୍ରାଉନ୍ ଏ ଘଟଣାରେ ପୂରାପୂରି ହତୋତ୍ସାହ ହୋଇପଡ଼ିଥିଲେ । ଏତେ ପରିଶ୍ରମର ଫଳ ଯଦି ଶୂନ୍, ତା'ହେଲେ ଜୀବନରେ ସେ ଆଉ କୌଣସି ଗବେଷଣା କାମରେ ହାତ ଦେବେନି । ଏହି ସିଦ୍ଧାନ୍ତ ନେଇ ସେ ଚୁପ୍‌ଚାପ୍ ବସିଗଲେ । ଏପରି ଗୋଟିଏ ବର୍ଷ ବିତିଗଲା ।

ଦିନେ ପ୍ରଫେସର ଚିନ୍ତିତ ମନରେ ଏକାକୀ ବସିଥାନ୍ତି । ହଠାତ୍ ପଛଆଡୁ ତାଙ୍କ ଉପରେ ଆକ୍ରମଣ ହେଲା । ଘଟଣା କଣ ଜାଣିବା ଆଗରୁ ତାଙ୍କର ଚେତା ବୁଡ଼ିଗଲା । ଚେତା ଫେରିବା ବେଳକୁ ହାତ-ଗୋଡ଼ ଲୁହା ଶିକୁଳିରେ ବନ୍ଧା ହେଇ ସେ ପଡ଼ିଥାନ୍ତି ଗୋଟେ ଅନ୍ଧାରି ଗୁମ୍ଫା ଭିତରେ । ସେ ଅନୁମାନ କରି ଜାଣିପାରିଲେ ଯେ, କେହି ତାଙ୍କୁ ଅପହରଣ କରି ଆଣି ଏ ଗୁମ୍ଫା ଭିତରେ ବନ୍ଦି କରିଛି । କିନ୍ତୁ କାହିଁକି ? ଏହାର ଉତ୍ତର ସେ ଖୋଜି ପାଇଲେନି ।

ଗୁମ୍ଫା ଭିତରେ ଅସ୍ପଷ୍ଟ ଆଲୁଅରେ ସେ ଦେଖିବାକୁ ପାଇଲେ, ତାଙ୍କ ପାଖରେ, ତାଙ୍କରିପରି ବନ୍ଧା ହୋଇ ଆଉ ଜଣେ କିଏ ପଡ଼ିଛି । ସେ ଟିକିଏ ନିରୀକ୍ଷଣ କଲେ ଏବଂ ଚମକି ପଡ଼ିଲେ । କାରଣ ସେ ଥିଲେ 'ଡ. ଅଞ୍ଜନ' !



ପ୍ରଫେସର ବିସ୍ମିତ କଣ୍ଠରେ ପଚାରିଲେ, ''ଅଞ୍ଜନ୍...ତମେ ! ସେପଟେ ସାରା ଆମେରିକାର ଗୁଇନ୍ଦା ବିଭାଗ ତୁମକୁ ଖୋଜୁଛି, ତମେ ଏ ଅନ୍ଧାରି ଗୁମ୍ଫାରେ ! ଆଉ 'ରୋବିନ୍' କାହିଁ ?''

ଡ ଅଞ୍ଜନ ଭଙ୍ଗା ଗଳାରେ କହିଲେ, ''ସାର୍...ମୁଁ ଜାଣେ–ରୋବିନର ଅପହରଣକାରୀ ଭାବରେ ସାରା ଦୁନିଆରେ ମୋ' ନାଁରେ ଅପବାଦ ଉଠିଛି; ହେଲେ ଆପଣ ଅନ୍ତତଃ ବିଶ୍ୱାସ କରନ୍ତୁ, 'ରୋବିନ'ର ଚୋରି ସମ୍ପର୍କରେ ମୁଁ କିଛି ବି ଜାଣିନି । ସେଦିନ ରାତିରେ ମୁଁ ଆପଣମାନଙ୍କଠାରୁ ବିଦାୟ ନେଲି–ହେଲେ ମୋ ବସାରେ ପହଞ୍ଚିବା ସୁଯୋଗ ପାଇଲିନି । କାର୍ ସହିତ ମୋତେ ଏ ସଇତାନଗୁଡ଼ାକ ଅପହରଣ କରିଆଣିଲେ । ବର୍ଷେ ହେଲା ମୁଁ ଏ ଗୁମ୍ଫା ଭିତରେ ବନ୍ଦି ଅବସ୍ଥାରେ ଅଛି କହିଲେ ଚଳେ । ସେହି ରାତିରେ ହିଁ 'ରୋବିନ୍'ର ଚୋରି ହୋଇଯାଇଛି ବୋଲି ମୁଁ ଶୁଣିଲି । ସମସ୍ତେ ଧରିନେଲେ ଯେ, ମୁଁ 'ରୋବିନ'କୁ ଚୋରିକରି ଫେରାର ହୋଇଯାଇଛି ।''

ପ୍ରଫେସର ଉତ୍କଣ୍ଠାର ସହିତ ପ୍ରଶ୍ନ କଲେ, ''ଏ' ସଇତାନମାନେ କିଏ ? ପ୍ରଥମେ ତୁମକୁ । ପୁଣି ମୋତେ ଆଣି ଏମାନେ ଏଠି ବନ୍ଦି କରି ରଖିବାର ଉଦ୍ଦେଶ୍ୟ କଣ ?''

ଡ. ଅଞ୍ଜନ କହିଲେ, ''ସାର୍ ଏମାନେ ହେଉଛନ୍ତି ଗୋଟେ ଅନ୍ତଃରାଷ୍ଟ୍ରୀୟ ଡକାୟତଦଳ । ଆମେ ସୁପରବ୍ରେନ ଉଦ୍ଭାବନ କରିବା କଥା ଏମାନେ ଜାଣିପାରିଛନ୍ତି । ସୁପରବ୍ରେନ୍ ଯେଉଁ ଫର୍ମୁଲାରେ ତିଆରି ହେଲା ସେହି ଫର୍ମୁଲା ପ୍ରୟୋଗ କରି ଗୋଟେ 'ସଇତାନୀ ବ୍ରେନ' ସୃଷ୍ଟି କରିବାକୁ ଚାହାଁନ୍ତି ଏମାନେ । ସଇତାନୀ ମସ୍ତିଷ୍କଟିଏ ତିଆରି କରି ଗୋଟେ ଶକ୍ତିଶାଳୀ ରୋବୋଟ୍ ମସ୍ତିଷ୍କରେ ଖଞ୍ଜିଦେଲେ ସେ ହୋଇଯିବ 'ସଇତାନ–ରୋବୋଟ୍' । ତା'ପରେ ଏମାନେ ମନଇଚ୍ଛା ତାକୁ କାମରେ ଲଗାଇ ସାରା ବିଶ୍ୱରେ ଆତଙ୍କ ରାଜ ଚଳାଇବାକୁ ମସୁଧା କରିଛନ୍ତି ।''

''ଏମାନେ ଜାଣିଲେ ଯେ, ଏ କାମରେ ମୁଁ ଆପଣଙ୍କର ଏକମାତ୍ର ସହଯୋଗୀ ଆଉ ମୁଁ ଜଣେ ବିଦେଶୀ । ମୋ'ଠୁ ସହଜରେ ଏ କାମଟା ହାସଲ କରିନେବେ ବୋଲି ଭାବି ପ୍ରଥମେ ମୋତେ ଉଠାଇ ଆଣିଲେ । ମୁଁ ଏମାନଙ୍କ ମନ୍ଦ ଉଦ୍ଦେଶ୍ୟ ଜାଣିପାରିଲି । ତେଣୁ ମିଛରେ ଏମାନଙ୍କୁ ପ୍ରତିଶ୍ରୁତି ନେଲି ଯେ–ମୁଁ ସଇତାନୀ ମସ୍ତିଷ୍କଟିଏ ତିଆରି କରିଦେଇ ପାରିବି; କିନ୍ତୁ ଏଥିପାଇଁ ବର୍ଷେ ସମୟ ଦରକାର ।''

ବ୍ରାଉନ୍ ପଚାରିଲେ, ''କିନ୍ତୁ ଅଞ୍ଜନ, ତମେ ତ' ଜାଣ ମୋ' ସହାୟତା ବିନା ତମେ କିଛି କରିପାରିବନି, ସେମାନଙ୍କୁ ତା'ହେଲେ ଏପରି କାହିଁକି କହିଲ ?''

ଅଞ୍ଜନ କହିଲେ, ''ସାର୍, ମୁଁ ଚାହୁଁଥିଲି ଏ ବିପଦଠାରୁ ଆପଣ ଦୂରେଇ ରହନ୍ତୁ । ମୁଁ ମନା କରିଥିଲେ ସଙ୍ଗେ ସଙ୍ଗେ ଆପଣଙ୍କୁ ଉଠାଇ ଆଣିଥାନ୍ତେ । ମୁଁ ବର୍ଷେ ସମୟ ମାଗିଲି, ଭାବିଥିଲି ବର୍ଷେ ସମୟ ମଧ୍ୟରେ ମୋତେ ଏଠୁ ଖସି ପଳାଇବାର ବାଟ ମିଳିଯିବ; କିନ୍ତୁ ଯାଇ ପାରିଲି ନାହିଁ । ଏ ସଇତାନମାନେ ଜାଣିଗଲେ ଯେ, ମୁଁ ସେମାନଙ୍କୁ ବର୍ଷେ ପର୍ଯ୍ୟନ୍ତ ଠକି ଚାଲିଛି । ମୋ' ଦେଇ କିଛି ହେଇପାରିବିନି । ତେଣୁ ସେମାନେ ଆଜି ଆପଣଙ୍କୁ ଅପହରଣ କରିଆଣିଲେ । ଏବେ ଆପଣ କୁହନ୍ତୁ, ଆମେ କଣ କରିବା ?''

ପ୍ରଫେସର ବ୍ରାଉନ୍ ସମଗ୍ର ଘଟଣାଟି ଶୁଣି ତଟସ୍ଥ ହୋଇଗଲେ । ସେ କହିଲେ, ''ଦେଖ ଅଞ୍ଜନ, ଜୀବନ ଚାଲିଯିବ ପଛେ ଗୋଟେ ଆତଙ୍କବାଦୀ 'ଯନ୍ତ୍ରମଣିଷ' ମୁଁ କଦାପି ସୃଷ୍ଟି କରିପାରିବିନି । ବିଜ୍ଞାନ ବଳରେ ସମାଜକୁ ଆଶିର୍ବାଦ ଦେବା ପରିବର୍ତ୍ତେ ଆମେ ଯଦି ଅଭିଶାପ ଦେବାକୁ ଚେଷ୍ଟା କରିବା, ତା'ହେଲେ ଈଶ୍ୱର ଆମକୁ କଦାପି କ୍ଷମା ଦେବେ ନାହିଁ ।''

ଠିକ୍ ଏତିକିବେଳେ ଗୁମ୍ଫା ବାହାରେ ହେଲିକପ୍ଟର ଓହ୍ଲାଇବା ଶବ୍ଦ ଶୁଣାଗଲା । ଡ. ଅଞ୍ଜନ କହିଲେ, ''ସାର୍...ସେମାନେ ଆମକୁ ନେବାପାଇଁ ଆସିଲେ । ଏଠାରୁ ପ୍ରାୟ ପାଞ୍ଚଶହ କିଲୋମିଟର ଦୂରରେ ଥିବା କୌଣସି ଗୋଟେ ଅଜଣା ଦ୍ୱୀପରେ ଆମ ପାଇଁ ଗୋଟେ ଅତ୍ୟାଧୁନିକ ବିଜ୍ଞାନ ପ୍ରୟୋଗଶାଳା ତିଆରି କରାଯାଇଛି । ଆମକୁ ସେମାନେ ଏବେ ସେଠାକୁ ନେଇଯିବେ ।''

ଅଞ୍ଜନଙ୍କ ବାକ୍ୟ ଶେଷ ହେବା ଆଗରୁ ପ୍ରବଳ ଗର୍ଜନ ସହିତ ଗୁମ୍ଫାର ପଥରକବାଟଟା ଖୋଲିଗଲା । ଦୁଇଜଣ କଳାମୁଖାଧାରୀ ମଣିଷ ହାତରେ ଷ୍ଟେନଗନ୍ ଧରି ପଶିଆସିଲେ । ଦୁଇ ବୈଜ୍ଞାନିକଙ୍କ ଛାତିରେ ବନ୍ଧୁକ ମୁନ ଲଗାଇ ହାତଗୋଡ଼ର ବନ୍ଧନ ଖୋଲିଦେଲେ ଏବଂ ଗୁମ୍ଫା ବାହାରକୁ ଯିବାପାଇଁ ନିର୍ଦ୍ଦେଶ ଦେଲେ । ଦୁଇ ବନ୍ଧୁ ଗୁମ୍ଫା ବାହାରକୁ ଆସି ଦେଖିଲେ ସେମାନଙ୍କ ପାଇଁ ପ୍ରସ୍ତୁତ ହୋଇ ରହିଛି ଛୋଟ ବିମାନଟିଏ । ତା' ଭିତରେ ପାଇଲଟ୍ ବ୍ୟତୀତ ଆଉଜଣେ ରାକ୍ଷସ ପରି ମଣିଷ ବସିଛି । ମନେ ହେଉଥିଲା–ସେ ହିଁ ଦଳର ସର୍ଦ୍ଦାର ।

ଦୁଇ ବୈଜ୍ଞାନିକ ବନ୍ଧୁକ ମୁନ ନିର୍ଦ୍ଦେଶରେ ଯାଇ ବସିଲେ ବିମାନ ଭିତରେ । ଚାହୁଁ ଚାହୁଁ ବିମାନ ଉଡ଼ିବାକୁ ଲାଗିଲା । ଏ ପରିସ୍ଥିତିରେ ଦୁହେଁ କିଂକର୍ତ୍ତବ୍ୟବିମୂଢ଼ । ସାମନାରେ ଡକାୟତ ସର୍ଦ୍ଦାର । ଦୁଇପାଖରେ ଦୁଇଜଣ ବନ୍ଧୁକଧାରୀ । ଏ ବିପଦରୁ କିପରି ଉଦ୍ଧାର ମିଳିବ ଚିନ୍ତା କରିବାକୁ ଲାଗିଲେ ଦୁହେଁ । ବିପଦରେ ପଡ଼ିଲେ ଯେତେ ବଡ଼ ବିଜ୍ଞାନୀ ହେଲେ ମଧ୍ୟ ଭଗବାନଙ୍କୁ ଡାକିବା ଛଡ଼ା ଉପାୟ କଣ ? ଦୁହେଁ ମନେ ମନେ ତାହା ହିଁ କରୁଥିଲେ ।

ହେଲିକପ୍ଟର ନିଳ ଦରିଆ ଉପରେ ଉଡ଼ି ଚାଲିଥାଏ । ତଳେ ଅପସରି ଯାଉଥାଏ ଅସଂଖ୍ୟ ଦ୍ୱୀପ ଓ ଛୋଟ ଛୋଟ ଟାପୁ । ଠିକ୍ ଏତିକିବେଳେ ହଠାତ୍ କମ୍ପି ଉଠିଲା ବିମାନଟି । ପାଇଲଟ୍ ଚିତ୍କାର କଲା, ''ହୁସିଆର... ! ବିମାନର ଇଞ୍ଜିନରେ ଯାନ୍ତ୍ରିକ ତ୍ରୁଟି ଦେଖାଦେଇଛି । ଯେକୌଣସି ମୁହୂର୍ତ୍ତରେ ବିସ୍ଫୋରଣ ଘଟିଯାଇପାରେ । ନିଜ ନିଜ ଜୀବନ ରକ୍ଷା କର !'' ଏତିକି କହି ସେ ତା' ସିଟ୍‌ରୁ ତଳକୁ ଡେଇଁ ପଡ଼ିଲା । ତା' ଦେଖାଦେଖି ଦୁଇ ବନ୍ଧୁକଧାରୀ ଏବଂ ଶେଷରେ ସେମାନଙ୍କ ସର୍ଦ୍ଦାର ମଧ୍ୟ ତଳକୁ ଡେଇଁ ପଡ଼ିଲେ । ଦୁର୍ଭାଗ୍ୟକୁ ସେମାନଙ୍କ ପିଠିରେ ପାରଚ୍ୟୁଟ୍‌ର ଥଳି ବନ୍ଧା ହୋଇନଥିଲା ଏବଂ ବିମାନଟି ସେତିକିବେଳେ ଉଡ଼ିଯାଉଥିଲା ଗୋଟେ ବିଶଳ ପଥର ଚକଡ଼ା ଉପରେ । ଜୀବନ ଭୟରେ ଡେଇଁ ପଡ଼ିଥିବା ଚାରି ସଇତାନଙ୍କ ଶେଷ ପରିଣତି କଣ ହେଇଥିବ, ତାହା ଏଠାରେ ନ ଲେଖିଲେ ଚଳିବ ।

ଏଣେ ଚାଳକ ବିହୀନ ହେଲିକପ୍ଟରଟି ପାଗଳ ପକ୍ଷୀ ପରି ଯୁଆଡ଼େ ନାଇଁ ସେଆଡ଼େ ମାଡ଼ି ଚାଲିଥାଏ । ଡ. ଅଞ୍ଜନ ବ୍ୟତିବ୍ୟସ୍ତ ହୋଇ ଉଠୁଥାନ୍ତି । ପ୍ରଫେସର ତାଙ୍କୁ ଧୈର୍ଯ୍ୟ ଧରିବାପାଇଁ କହୁଥାନ୍ତି । ବୈଜ୍ଞାନିକ ହେଲେ ମଧ୍ୟ ଈଶ୍ୱରଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ।

ଠିକ୍ ଏତିକିବେଳେ କମ୍ପମାନ ବିମାନଟି ସମୁଦ୍ର ମଝିରେ ଖସିପଡ଼ିଲା । ଇଞ୍ଜିନ୍ ଗତିଶୀଳ ଥିବା ହେତୁ ପାଣି ଉପରେ ଘୋଷାଡ଼ି ହୋଇ ଚାଲିଗଲା କିଛି ଦୂର । ଶେଷରେ ଗୋଟେ ପ୍ରଚଣ୍ଡ ବିସ୍ଫୋରଣ ସହିତ ଖଣ୍ଡଖଣ୍ଡ ହୋଇଗଲା ବିମାନଟି । କିନ୍ତୁ ଗୋଟେ ମୁହୂର୍ତ୍ତ ଆଗରୁ ଦୁଇ ବୈଜ୍ଞାନିକ ଲମ୍ଫ ଦେଇଥିଲେ ପାଣିକୁ । ପାଣିରୁ ମୁଣ୍ଡ ଉଠାଇ ଦେଖିବା ବେଳକୁ ବିମାନଟି ଖଣ୍ଡଖଣ୍ଡ ହୋଇ ଜଳୁଥାଏ । ସେ ଦୁହେଁ କିନ୍ତୁ ଥିଲେ ସମ୍ପୂର୍ଣ୍ଣ ସୁରକ୍ଷିତ ।

କଥାରେ ଅଛି, 'ହରି ରଖେ ତ' ମାରେ କିଏ ?' ଭାଗ୍ୟକୁ ଦୁଇଖଣ୍ଡ ଦରପୋଡ଼ା ଭାସମାନ ଟିଣ ଦୁଇବନ୍ଧୁଙ୍କ ହାତରେ ପଡ଼ିଗଲା । ତା'ରି ଉପରେ ଆଶ୍ରା ଦେଇ ଦୁହେଁ ଜୀବନ ବଞ୍ଚାଇବାକୁ ଚେଷ୍ଟା କଲେ ।

× × × ×

ସମୁଦ୍ରର ଅଥଳ ଜଳରାଶି । ତା' ଭିତରେ ଅସୁମାରି ଭୟଙ୍କର ଜଳଜୀବ । ମଣିଷ-ଗିଳା ସାର୍କ ମାଛଠୁ ଆରମ୍ଭ କରି ଶକ୍ତିଶାଳୀ ଅକ୍ଟୋପସ୍ ପର୍ଯ୍ୟନ୍ତ । ଦୁଇ ବୈଜ୍ଞାନିକ ବନ୍ଧୁ ସେ ବିପଦପୂର୍ଣ୍ଣ ସମୁଦ୍ରବକ୍ଷରେ ପଡ଼ି ଜୀବନମୂର୍ଚ୍ଛା ଉଦ୍ୟମ ଚଳାଇଥାନ୍ତି ବଞ୍ଚିବା ପାଇଁ । ଧ୍ୱଂସପ୍ରାପ୍ତ ହେଲିକପ୍ଟରରୁ ଛିଟିକି ପଡ଼ିଥିବା ଦୁଇଖଣ୍ଡ ଟିଣପଟା ଉପରେ ଭରାଦେଇ ସେମାନେ ଅଗ୍ରସର ହେଉଥିଲେ । ଅଳ୍ପ ଦୂରରୁ ଦେଖାଗଲା ଛୋଟ ଦ୍ୱୀପଟିଏ ।

ଈଶ୍ୱରଙ୍କ ଅସୀମ କୃପା । ଦୁହେଁ ଶେଷରେ ମାଟି ଛୁଇଁବାକୁ ସମର୍ଥ ହେଲେ । କିନ୍ତୁ ସେତେବେଳକୁ ଆଉ ଆଖିପତା ଉଠାଇବାକୁ ମଧ୍ୟ ସେମାନଙ୍କର ବଳ ନଥାଏ । ସେମିତି କିଛି ସମୟ ପଡ଼ି ରହିଲେ ଦୁହେଁ ।

ହଠାତ୍ ଗୋଟେ ଭୀଷଣ ଗର୍ଜନରେ ଚେତା ଫେରିଲା । କିନ୍ତୁ ଆଖି ଆଗରେ ଯେଉଁ ଦୃଶ୍ୟ ସେ ଦୁହେଁ ଦେଖିଲେ ପୁଣିଥରେ ଚେତା ବୁଡ଼ିଯିବା କଥା । ମାତ୍ର ଆଠ-ଦଶ ମିଟର ଦୂରରେ ଦୁଇଟା ସିଂହ ଭୀଷଣ ଲଢ଼େଇରେ ମାତିଥିଲେ । ମଝିରେ ମରିପଡ଼ିଥିଲା ଗୋଟେ ଜଙ୍ଗଲୀ ମଇଁଷି । ଶିକାରକୁ ନେଇ ଦୁଇ ଶିକାରୀଙ୍କ ଭିତରେ ଯୁଦ୍ଧ ।

ଭୟରେ ଶିହରି ଉଠିଲେ ଦୁଇବନ୍ଧୁ । କଣ କରିବେ କିଛି ସ୍ଥିର କରିପାରିଲେନି । ପଡ଼ି ରହିଲେ ହିଂସ୍ର ସିଂହ ମୁହଁରେ ମରଣ । ଉଠି ଧାଇଁବାକୁ ଚେଷ୍ଟା କଲେ ମଧ୍ୟ ବିପଦ ।

ଯା' ହେଉ ଦୁହେଁ ସାହସ ସଞ୍ଚୟ କଲେ । ସିଂହମାନଙ୍କ ଅଲକ୍ଷ୍ୟରେ ଉଠିବାକୁ ଚେଷ୍ଟା କଲେ । ମାତ୍ର ଦୁର୍ଯ୍ୟୋଗ ! ସେମାନଙ୍କ ହିଂସ୍ର ଦୃଷ୍ଟିରୁ ବର୍ତ୍ତିଯାଇ ପାରିଲେ ନାହିଁ । ଲଢ଼େଇ ଛାଡ଼ି ଝପଟି ଆସିଲେ ସିଂହ ହଳକ । ମାତ୍ର ବିସ୍ମୟର କଥା, ଅକସ୍ମାତ୍ ଘଟିଗଲା ଗୋଟେ ଅସମ୍ଭବ ଘଟଣା ! ଭୀଷଣକାୟ ସିଂହ ଦୁଇଟା ହଠାତ୍ ବିରାଡ଼ି ଛୁଆ ପରି ଛୋଟ ହେଇଗଲେ । ତା'ପରେ ଆଉ ଆକ୍ରମଣ କରିବେ କଣ, ମଣିଷ ଦୁଇଟାକୁ ଦେଖି ଭୟରେ ଯାଇ ଲୁଚିଗଲେ ବୁଦା ଭିତରେ ।

ଏ ଘଟଣା ଦେଖି ଦୁଇ ବିଜ୍ଞାନୀ ବନ୍ଧୁ ବିସ୍ମୟରେ କାଠ ପାଲଟି ଯାଇଥାନ୍ତି । ଘଟଣାଟି ସତ କି ସ୍ୱପ୍ନ ବୁଝିପାରିଲେନି ସେମାନେ । ଡ. ଅଞ୍ଜନ କହିଲେ, ''ସାର୍, ଏଡ଼େ



ବିସ୍ମୟକର ଘଟଣା ଆପଣ କେବେ ଦେଖିଥିଲେ ?'' ପ୍ରଫେସର କହିଲେ, ''ମନେ ହେଉଛି, ଯା'ଠୁ ଅଧିକ ବିସ୍ମୟକର ଘଟଣା ଏ ଦ୍ୱୀପରେ ଆମକୁ ଦେଖିବାକୁ ମିଳିବ । ସେ ଯା' ହେଉ, ଚାଲ ଆଗକୁ ଯିବା । ଭାରି ଭୋକ ହେଲାଣି, କିଛି ଜଙ୍ଗଲୀ ଫଳ ମିଳିଲେ ଖାଇବା ।''

ସତର୍କତାର ସହିତ ଦୁହେଁ ଆଗେଇବାକୁ ଲାଗିଲେ ଜଙ୍ଗଲ ଭିତରକୁ । ଅଳ୍ପ ଦୂରରେ ଗୋଟେ ବିଚିତ୍ର ଗଛ ସେମାନଙ୍କ ଦୃଷ୍ଟିରେ ପଡ଼ିଲା । ପାଖକୁ ଯାଇ ଦେଖିଲେ, ଗଛର ଡାଳ-ପତ୍ର ସବୁ ରୂପା ପରି ଚକ୍ ଚକ୍ କରୁଛି ଏବଂ ସେଥିରେ ଝୁଲୁଛି 'ସୁନାଫଳ' । ଦୁଇବନ୍ଧୁ ଅବାକ୍ । ରୂପାଗଛରେ ସୁନାଫଳ ! ଏ' କଥା କେବେ କଳ୍ପନା ବି

କରାଯାଇପାରେନା । ପ୍ରଫେସର ବ୍ରାଉନ୍‌ଙ୍କୁ ଭୀଷଣ ଭୋକ ଲାଗୁଥିଲା । କୌତୂହଳବଶତଃ ସେ ଗୋଟେ ଫଳ ଛିଣ୍ଡାଇ ଦେଲେ । ଆଶ୍ଚର୍ଯ୍ୟ ! ଫଳଟା ଡେମ୍ଫରୁ ଛିଣ୍ଡିବାମାତ୍ରେ ସତସତିକା ପାଚିଲା ଫଳରେ ପରିଣତ ହେଇଗଲା । ଫଳଟା ଏଡ଼େ ଲୋଭନୀୟ ଦିଶୁଥିଲା ଯେ, ବ୍ରାଉନ୍ ଆଉ ଲୋଭ ସମ୍ଭରଣ କରିପାରିଲେନି । କାଡୁମାଡୁ କରି ଚୋବେଇ ଚାଲିଲେ । ଭାରି ସୁଆଦିଆ ଥିଲା ଫଳଟା । ତାଙ୍କ ଦେଖାଦେଖି ଡ. ଅଞ୍ଜନ ମଧ୍ୟ ଗୋଟେ ଫଳ ତୋଳି ଖାଇବାକୁ ଲାଗିଲେ । ଦୁହିଙ୍କ ହାତରୁ ଫଳ ଦୁଇଟି ଶେଷ ହେବା ବେଳକୁ ଆଉ ଗୋଟେ ବିଚିତ୍ର ଘଟଣା ଘଟିଲା । ପ୍ରଫେସର ଦେଖିଲେ, ଅଞ୍ଜନ ତାଙ୍କ ପାଖରୁ ହଠାତ୍ କୁଆଡ଼େ ଚାଲିଯାଇଛନ୍ତି । ସେ ବଡ଼ ପାଟିରେ ଡାକିଲେ, ''ଅଞ୍ଜନ...ତମେ କୁଆଡ଼େ ଗଲ ?''

ଅଞ୍ଜନ ଅତି ନିକଟରୁ ଉତ୍ତର ଦେଲେ, ''ସାର୍...ଏଠୁ ଟିପେ ବି କୁଆଡ଼େ ମୁଁ ଘୁଞ୍ଚିନି; କିନ୍ତୁ ଆଶ୍ଚର୍ଯ୍ୟ, ମୁଁ ଆପଣଙ୍କୁ ଦେଖିପାରୁନି !''

''ମୁଁ ମଧ୍ୟ ତୁମକୁ ଦେଖିପାରୁନି, ଅଞ୍ଜନ ! ତା'ମାନେ ଏ ଅଦ୍ଭୁତ ଫଳ ଖାଇବା ପରେ ଆମେ ଅଦୃଶ୍ୟ ହେଇଗଲେ ।'' ପ୍ରଫେସରଙ୍କର କେବଳ ବିସ୍ମିତ କଣ୍ଠସ୍ୱର ହିଁ ଶୁଣିପାରୁଥିଲେ ଅଞ୍ଜନ । ସେ କହିଲେ, ''ଏ' ତ ବଡ଼ ଆଚମ୍ବିତ କଥା, ସାର୍ ! ଏ ଯୁଗରେ ବି ଏପରି ଅସମ୍ଭବ ଘଟଣା ଘଟିପାରେ ? ମନେ ହେଉଛି, ଆମେ କୌଣସି 'କୁହୁକ-ଦ୍ୱୀପ'ରେ ଆସି ପହଞ୍ଚିଯାଇଛେ । ଏବେ କରିବା କଣ ?''

ପ୍ରଫେସର କହିଲେ, ''ଆମେ ପରସ୍ପରକୁ ସିନା ଦେଖିପାରୁନେ, ଆଉ ସବୁତ ଦେଖିପାରୁଛେ । ଦେଖ, ଆଗରେ ଟିକି ଝରଣାଟି ବହିଯାଉଛି । ସେଠୁ ପାଣି ପିଇବା ଚାଲ ।''

ଦୁହେଁ ଅଦୃଶ୍ୟ ଭାବେ ଝରଣା ଆଡ଼କୁ ଆଗେଇଲେ । ଝରଣା ପାଖରେ ପହଞ୍ଚି ଆଞ୍ଜୁଳା ଆଞ୍ଜୁଳା ପାଣି ପିଇବାକୁ ଲାଗିଲେ । ଆଶ୍ଚର୍ଯ୍ୟର କଥା, ପାଣି ପିଇବା ମାତ୍ରେ ଦୁହେଁ ପୁଣି ଦୁହିଁଙ୍କୁ ଦେଖିପାରିଲେ । ପ୍ରଫେସର କହିଲେ, ''ତୁମ କଥା ଠିକ୍, ଅଞ୍ଜନ ! ଏଇଟା ନିଶ୍ଚୟ ଗୋଟେ କୁହୁକ ଦ୍ୱୀପ । ତେବେ ଏ ଦ୍ୱୀପରେ ମଣିଷ ଅଛନ୍ତି କି ନାଇଁ ଜାଣି ହେଉନି ।''

ଅଞ୍ଜନ କହିଲେ, ''ଚାଲନ୍ତୁ ସାର୍, ଗଛ ଛାଇରେ ଆରାମରେ ବସି ଏ କୁହୁକଦ୍ୱୀପରୁ କେମିତି ରକ୍ଷା ପାଇବା, ସେ କଥା ଚିନ୍ତା କରିବା ।'' ଝରଣା କୂଳରେ ଗୋଟେ ବିରାଟ

ଗଛ-ଗଣ୍ଡି ପଡ଼ିଥିଲା । ଦୁହେଁ ଯାଇ ସେ ଗଣ୍ଡି ଉପରେ ବସିଲେ । ଅଳ୍ପ ସମୟ ଯାଇଛି । ହଠାତ୍ ଗଣ୍ଡିଟା ଆଗକୁ ଘୋଷାରି ଚାଲିଲା । ଦୁଇବନ୍ଧୁ ଭୟପାଇ ତଳକୁ ଡେଇଁ ପଡ଼ିଲେ । ଦେଖନ୍ତି ତ' ସେଇଟା ଗୋଟେ ବିଶାଳକାୟ ସାପ ! ଏତିକିବେଳେ ସେମାନଙ୍କ ମୁଣ୍ଡଆଡୁ ଶୁଣାଗଲା ଭୟଙ୍କର ଫଁ...ଫଁ... ଗର୍ଜନ । ଉପରକୁ ଚାହିଁ ଦେଖନ୍ତି ତ, ଗୋଟେ ବିରାଟ ସାପ-ଫଣା ଜିଭ ଲହ ଲହ କରି ମାଡ଼ି ଆସୁଛି । ସାପର ପାଟି ଆଉ ସେମାନଙ୍କ ମୁଣ୍ଡ ମଧ୍ୟରେ ଆଉ ମାତ୍ର ଦୁଇ କି ଅଢ଼େଇ ମିଟର ବ୍ୟବଧାନ । ଏଠୁ ଆଉ ବର୍ତ୍ତିବାର ରାହା ନାହିଁ, ଏହା ଭାବି ଦୁଇ ବୈଜ୍ଞାନିକ ଜୀବନକୁ ପାଣି ଛଡ଼େଇଦେଲେ ଏବଂ ଚିତ୍ ହୋଇ ଶୋଇପଡ଼ିଲେ ତଳେ । ମଲାପରି ପଡ଼ି ରହି ସେମାନେ ଅପେକ୍ଷା କଲେ ସାପର ଆକ୍ରମଣକୁ; କିନ୍ତୁ ଆଶ୍ଚର୍ଯ୍ୟର କଥା, କାହାର ଅଭିଶାପରେ କେଜାଣି ସାପଟା ଯେମିତି ପଥର ପାଲଟିଗଲା ହଠାତ୍ । ସେ ପାଟିମେଲା କରି ସେତିକିରେ ହିଁ ଅଟକି ରହିଥିଲା । ତଳକୁ ଖସିପାରୁ ନଥିଲା କି ଆକ୍ରମଣ କରିପାରୁ ନଥିଲା । ଦୁଇବନ୍ଧୁ–କୌଣସି ପ୍ରକାରେ ଜୀବନ ବଞ୍ଚାଇ ସେଠାରୁ ଖସିଗଲେ । ଏ ମଣିଷଗିଳା ସାପଟାର ହଠାତ ଏ ଅବସ୍ଥା ହେଲା କାହିଁକି କେହି କିଛି ବୁଝିପାରିଲେନି ।

ପ୍ରଫେସର ଟିକିଏ ଚିନ୍ତାକରି କହିଲେ, "ଅଞ୍ଜନ, ମୋର ମନେ ହେଉଛି ଏ କୁହୁକ ଦ୍ୱୀପର କେହି ଜଣେ ଆମ ପିଛା କରୁଛି ଏବଂ ବାରମ୍ବାର ଆମକୁ ବିପଦରୁ ରକ୍ଷା କରିଚାଲିଛି ।"

ଏତିକିବେଳେ ପଛଆଡୁ କାହାର ଅଟ୍ଟହାସ ଶୁଣାଗଲା । ଦେଖନ୍ତି ତ–ଚାରିଟା ଭୀଷଣ ଜଙ୍ଗଲୀମଣିଷ, ହାତରେ ବଡ଼ ବଡ଼ ବର୍ଚ୍ଛା ଧରି ଠିଆ ହେଇଛନ୍ତି । ଜଣକ ହାତରେ ବୁଢ଼ାସାପ ଚମଡ଼ାରେ ତିଆରି ଗୋଟେ ମୋଟା ଦଉଡ଼ି ଥିଲା । ଦୁଇଜଣ ଜଙ୍ଗଲୀ ଦୁଇବନ୍ଧୁଙ୍କ ଛାତିକୁ ବର୍ଚ୍ଛା ମୁନ ଲଗାଇ ରଖିଲେ ଏବଂ ଆଉ ଦୁଇଜଣ ସେମାନଙ୍କ ହାତ ଓ ଅଣ୍ଟାକୁ ବାନ୍ଧି ପକାଇଲେ ।

ଦୁଇ ବିଜ୍ଞାନୀ ଦେଖିଲେ, ଆତ୍ମସମର୍ପଣ ଛଡ଼ା ଆଉ ଉପାୟ କିଛି ନାହିଁ । ହାତରେ ତ ଅସ୍ତ୍ରଶସ୍ତ୍ର ନାହିଁ; ଥିଲେ ମଧ୍ୟ ଏମାନଙ୍କ ସହିତ ଲଢ଼େଇ କରିବା କଣ ସହଜ କଥା ?

ଜଙ୍ଗଲୀମାନେ ଦୁଇବନ୍ଧୁଙ୍କୁ ଟାଣି ନେଲେ କିଛି ଦୂର । ଆଗରେ ଢୋଲ ମୃଦଙ୍ଗର ଶବ୍ଦ ସହିତ ନାନା ଚିତ୍କାର ଶୁଣାଯାଉଥିଲା । ଧୂଆଁ ଉଠିବା ସହିତ ପୋଡ଼ା ମଣିଷମାଂସର ଗନ୍ଧ ଭାସି ଆସୁଥିଲା । କଞ୍ଚା ରକ୍ତ ବହିଯାଉଥିବା ଗୋଟେ ନାଳ ପାର ହେବା ପରେ

ସେମାନେ ପହଞ୍ଚିଲେ ଗୋଟେ ଜଙ୍ଗଲୀ ବସ୍ତିରେ । ପଲେ ପିଲା-ଛୁଆ, ମାଇପି-ମରଦ ଏମାନଙ୍କୁ ଆସି ଘେରିଗଲେ । ସମସ୍ତଙ୍କ ହାତରେ ଧାରୁଆ କଟୁରି, ତୀକ୍ଷଣ ବର୍ଚ୍ଛା । ସମସ୍ତେ ପ୍ରାୟ ଉଲଗ୍ନ ଅବସ୍ଥାରେ । ସେମାନଙ୍କ ଭାଷା ବୁଝି ହେଉନଥାଏ । କିନ୍ତୁ ବୁଝି ହେଉଥିଲା ଯେ–ଏ ମଣିଷ ଦୁଇଟାକୁ ପାଇ ସେମାନେ ଭାରି ଖୁସି ।

ବସ୍ତି ମଝିରେ ଗୋଟେ ସୁଉଚ୍ଚ କାଠ-ମଞ୍ଚା । ମଞ୍ଚା ଉପରେ ଯେଉଁ ରାକ୍ଷସ ପରି ଜଙ୍ଗଲୀଟା ବସିଥିଲା, ସେ ଥିଲା ଏମାନଙ୍କ ରାଜା । ତା ନିର୍ଦ୍ଦେଶ ପାଇ ଜଙ୍ଗଲୀମାନେ ଦୁଇ ବନ୍ଧୁଙ୍କୁ ଘୋଷାରି ନେଇଗଲେ ଗୋଟେ ପଡ଼ିଆକୁ । ପଡ଼ିଆ ମଝିରେ, ମଣ୍ଡପ ଉପରେ ଗୋଟେ ରାକ୍ଷସୀ-ଦେବୀ ମୂର୍ତ୍ତି । ତା' ଆଗରେ ଗଛର ଗଣ୍ଡିଟେ ଠିଆ ପୋତା ହେଇଥିଲା ଏବଂ ସେଇଟା କଞ୍ଚା ରକ୍ତରେ ଜୁଡୁବୁଡୁ ହେଇ ରହିଥିଲା । ସେଠାରେ ଠିଆ ହୋଇଥିଲା ଆଉଜଣେ ଭୀମକାୟ ଜଙ୍ଗଲୀ । ତା' ହାତରେ ଚକ୍‌ଚକ୍ କରୁଥିଲା ରକ୍ତରଞ୍ଜିତ ଖଣ୍ଡାଟିଏ । ଦୁଇବନ୍ଧୁଙ୍କୁ ନିର୍ଦ୍ଦେଶ ଦିଆଗଲା ମୁଣ୍ଡ ନୁଆଁଇ ଠାକୁରାଣୀଙ୍କୁ ଜୁହାର ହେବାପାଇଁ ।

ଏଥର ମୃତ୍ୟୁ ନିଶ୍ଚିତ ବୋଲି ଜାଣିସାରିଥିଲେ ଦୁଇ ବିଜ୍ଞାନୀ । ଆଉ କରିବେ ବା' କଣ ? ମୁଣ୍ଡ ନ ନୁଆଁଇଲେ ଏମାନେ କଣ ନ' ମାରି ଛାଡ଼ିଦେବେ ? ମନେ ହେଉଛି ଏ ମଣିଷଖିଆ ଜାତି । ଏଠୁ ଆଉ ରକ୍ଷା କରିବ କିଏ ? ଯଦି ରଖିବ ସେଇ ହରି ହିଁ ରଖିବ । ମନେ ମନେ ଏହା ସ୍ମରଣ କରି ଦୁହେଁ ଗଛ ଗଣ୍ଡି ଉପରେ ମୁଣ୍ଡ ନୁଆଁଇଲେ । ଘାତକ ତା ଖଣ୍ଡା ଉଞ୍ଚାଇ ଦୁଇଟାଯାକ ବେକକୁ ଏକା ଚୋଟକେ ଛିଣ୍ଡାଇ ଦେବାପାଇଁ ଦେଲା ଗୋଟେ ଶକ୍ତ ପ୍ରହାର । କିନ୍ତୁ ଏ' କଣ ! ଗୋଟେ ବିଚିତ୍ର କାଣ୍ଡ ଘଟିଗଲା । ଖଣ୍ଡାଟା ଫୁଲମାଳରେ ପରିଣତ ହୋଇ ଦୁଇ ବନ୍ଧୁଙ୍କ ଗଳାରେ ଝୁଲି ପଡ଼ିଲା ।

ଘାତକ ବିଚରା ଏ ଘଟଣାରେ ଆଶ୍ଚର୍ଯ୍ୟ ହେବା ଆଗରୁ ତା' ମୁଣ୍ଡଟା ତଳକୁ ଏବଂ ଗୋଡ଼ ଦୁଇଟା ଉପରକୁ ଉଠିଗଲା । କେବଳ ଘାତକ ନୁହଁ, ରାଜାଠୁ ଆରମ୍ଭ କରି ପିଲା-ଛୁଆ ଓ ମାଇପି ମରଦ ସମସ୍ତଙ୍କ ଅବସ୍ଥା ତଦ୍ରୂପ । ସମସ୍ତେ ଏକାବେଳକେ ଶୀର୍ଷାସନ କରିବା ପରି ତଳମୁହାଁ ହୋଇ ଶୂନ୍ୟରୁ ଝୁଲି ରହିଲେ ।

ଏ'ସବୁ କି ଚମତ୍କାର ଘଟୁଛି, ବୁଝିପାରିଲେନି ଦୁଇବନ୍ଧୁ । 'କିଏ ଆମର ଅଦୃଶ୍ୟ ତ୍ରାଣକର୍ତ୍ତା' କହୁ କହୁ ସେମାନଙ୍କ ଆଗରେ ଆସି ଠିଆ ହେଲା ଗୋଟେ ବିଚିତ୍ର ପ୍ରାଣୀ । ସେ ଅନ୍ୟ କେହି ନୁହେଁ; ପ୍ରଫେସରଙ୍କ ପ୍ରୟୋଗଶାଳାରୁ ଅନ୍ତର୍ଦ୍ଧାନ ହୋଇଥିବା ଯନ୍ତ୍ରମଣିଷ 'ରୋବିନ' !

ଆଖି ଆଗରେ 'ରୋବିନ'କୁ ଦେଖି ଦୁଇବନ୍ଧୁ ସତେ ଯେମିତି ଆକାଶରୁ ଖସି ପଡ଼ିଲେ । ଘଡ଼ିଏ ପର୍ଯ୍ୟନ୍ତ ସେମାନଙ୍କ ମୁହଁରୁ କଥା ବାହାରିଲା ନାହିଁ । 'ରୋବିନ' ଉଭୟଙ୍କ ସହିତ ହ୍ୟାଣ୍ଡସେକ୍ କରି କହିଲା, ''ମୋ 'କୁହୁକଦ୍ୱୀପ'କୁ ଆପଣମାନଙ୍କୁ ସ୍ୱାଗତ ।''



ପ୍ରଫେସର କହିଲେ, ''ରୋବିନ୍...ତମେ ଆସି ଏଠି ? ତେଣେ ସାରା ପୃଥିବୀରେ ତୁମ ପାଇଁ ଅନୁସନ୍ଧାନ ଚାଲିଛି ।''

ରୋବିନ କହିଲା, ''ସାର୍, ସେ ଦିନରାତିକଥା ମନେପକାନ୍ତୁ । ଆପଣମାନେ ମୋ ସୁପରବ୍ରେନ୍ ଚାର୍ଜ କରି ଘରକୁ ଚାଲିଗଲେ । ଠିକ୍ ରାତି ତିନିଟାରେ ମୋ ମସ୍ତିଷ୍କ ପୂରା କାର୍ଯ୍ୟକ୍ଷମ ହୋଇଗଲା । ସଙ୍ଗେସଙ୍ଗେ ସେ ତା' କାମ ଆରମ୍ଭ କରିଦେଲା । ଦେଖିଲି ମୁଁ ଗୋଟେ ପ୍ରୟୋଗଶାଳା ଭିତରେ ଅଛି । ଚାରିଆଡୁ ଦୁଆର ଝରକା ବନ୍ଦ । ଅର୍ଥାତ୍ ମୁଁ ବନ୍ଦୀ । ମୁଁ କିନ୍ତୁ ସେମିତି ରହିବାକୁ ଚାହୁଁନଥିଲି । ମୋ ସୁପରବ୍ରେନ୍ ସଙ୍ଗେସଙ୍ଗେ ଅନେକ କଥା ଭାବିନେଲା ବରଂ ଅନେକ କିଛି ଯୋଜନା ମଧ୍ୟ କରିପକାଇଲା । ମୁଁ ଦେଖିଲି, ଟେବୁଲ ଉପରେ ଚମତ୍କାର ଯାଦୁ-ବିଜ୍ଞାନ ବହିଟେ ଅଛି । ବହିଟିକୁ ପଢ଼ି ତା' ଭିତରେ ଥିବା ସବୁ ପ୍ରକାର ଯାଦୁବିଦ୍ୟା ହାସଲ କରିବାକୁ ମୋତେ ସାଢ଼େ ଚାରିମିନିଟ୍ ଲାଗିଲା । ନିଜକୁ ଅଦୃଶ୍ୟ କରିବା ଏବଂ ଅଦୃଶ୍ୟ ଭାବେ ଆକାଶରେ ଉଡ଼ିବା ବିଦ୍ୟା ମଧ୍ୟ ସେଥିରେ ଥିଲା । ମୁଁ ନିଜକୁ ଅଦୃଶ୍ୟ କରି ପ୍ରୟୋଗଶାଳା ଭିତରୁ ବାହାରକୁ ଆସିଲି ଏବଂ ଆକାଶରେ ଉଡ଼ିବାକୁ ଲାଗିଲି । ସାରା ରାତି ଉଡ଼ିଲି । ପ୍ରାୟ ସୂର୍ଯ୍ୟୋଦୟ ବେଳକୁ ପହଞ୍ଚିଲି ଆସି ଏ ଦ୍ୱୀପରେ । ଏ ସ୍ଥାନଟା ମୋତେ ଭାରି ଭଲ ଲାଗିଲା । କିଛି ନୂଆ ସୃଷ୍ଟି କରିବା ଭାବନା ମୋ' ସୁପର-ବ୍ରେନ୍ ଭିତରେ ଜାଗି ଉଠିଲା । ଭାବିଲି ମୁଁ ଏଠାରେ ଆଉଗୋଟେ ସ୍ୱତନ୍ତ୍ର ସଂସାର ସୃଷ୍ଟି କରିବି ଏବଂ ନିଜେ ରାଜା ହୋଇ ରହିବି ।

ସେଇଦିନୁ ମୁଁ ଲାଗିଗଲି କାମରେ । ଏ ଦ୍ୱୀପର ଅଧିବାସୀମାନଙ୍କୁ ତ ଆପଣମାନେ ଦେଖିଲେ । ଅସଭ୍ୟ, ମଣିଷଖିଆ ଜାତି । ମୁଁ ଭାବିଲି ଏମାନଙ୍କୁ ସଭ୍ୟ-ଶିକ୍ଷିତ କରାଯାଇପାରେ । କିନ୍ତୁ ମୁଁ ଏକା ଏତେବଡ଼ ଦ୍ୱୀପକୁ ସମ୍ଭାଳିବି କେମିତି ? ତା'ପରେ ମୁଁ 'ସୁପରବ୍ରେନ୍' ପ୍ରୟୋଗ କରି ପ୍ରଥମେ ମୋ' ପରି ସାତଜଣ 'ରୋବିନ'ଙ୍କୁ ସୃଷ୍ଟି କଲି । ଏ କାମରେ ସେମାନେ ମୋ' ସହଯୋଗ କଲେ । ଏବେ ବି ସେମାନେ କାମରେ ଲାଗିଛନ୍ତି । କିଏ ସ୍କୁଲ ଖୋଲି ଲୋକମାନଙ୍କୁ ଶିକ୍ଷାଦାନ କରୁଛି ତ କିଏ ଜନମଙ୍ଗଳ ସମିତି ଗଢ଼ି ସ୍ୱାସ୍ଥ୍ୟ ଓ କୃଷି ସମ୍ପର୍କରେ ଲୋକମାନଙ୍କୁ ବୁଝାଉଛି, ଆଉ କିଏ ଏମାନଙ୍କ ଅନ୍ଧବିଶ୍ୱାସ, କୁସଂସ୍କାର ଏବଂ ଅସଭ୍ୟ ପରମ୍ପରା ସମ୍ପର୍କରେ ସେମାନଙ୍କୁ ସଚେତନ କରାଇବାରେ ଲାଗିଛି । ଏ ନିର୍ଦ୍ଦିଷ୍ଟ ଅଞ୍ଚଳ ପାରକରି ଆପଣମାନେ ଭିତରକୁ ଗଲେ ଜାଣିପାରିବେ, ମୋ' ରାଜ୍ୟବାସୀ ଏବେ କେତେ ସଭ୍ୟ ଓ ଉନ୍ନତସ୍ତରରେ ପହଁଞ୍ଚିଲେଣି ।

ପ୍ରଫେସର ପଚାରିଲେ, ''ଆଚ୍ଛା ରୋବିନ, ଆମକୁ ଯେଉଁ ଜଙ୍ଗଲୀଗୁଡ଼ାକ ଧରି ଆଣିଲେ, କାହିଁ ସେମାନଙ୍କ ଅବସ୍ଥା ତ ବଦଳିନି ?''

''ନା' ଆଜ୍ଞା, ମୁଁ ଜାଣିଶୁଣି ସେମାନଙ୍କୁ ମୋ ଆୟତ୍ତକୁ ଆଣିନଥିଲି । ସେମାନେ ଗୋଟେ ସ୍ୱତନ୍ତ୍ର ଗୋଷ୍ଠି । ଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ସଂଘବଦ୍ଧ ଭାବେ ରହନ୍ତି । ସେମାନେ ହିଂସ୍ର, ଅସଭ୍ୟ ଓ ମଣିଷମାଂସଖିଆ, ତା' ସହିତ ସେମାନେ ଲଢୁଆ ମଧ୍ୟ । ଏ ଦ୍ୱୀପ ଉପରେ କବଜା କରିବାପାଇଁ ଯଦି କୌଣସି ବାହାର ଶତ୍ରୁ ଆସେ, ମୁଁ ଜାଣେ, ଏମାନେ ଜୀଅନ୍ତା ଛାଡ଼ିବେନି । ତେଣୁ ଏମାନଙ୍କୁ ମୁଁ ମୋ ରାଜ୍ୟର ପ୍ରତିରକ୍ଷା ଭାର ଦେଇଥିଲି ।''

ଡ. ଅଞ୍ଜନ କହିଲେ, ''ଏପରି କରିବା ଦ୍ୱାରା ଏମାନଙ୍କ ପ୍ରତି ଅନ୍ୟାୟ ହୋଇଛି । ମୋ' ମତରେ ଏମାନଙ୍କୁ ମଧ୍ୟ ସଭ୍ୟ-ଶିକ୍ଷିତ କରି ଗଢ଼ିବା ଉଚିତ ।''

ପ୍ରଫେସର ଏଥିରେ ଏକମତ ହୋଇ କହିଲେ, ''ହଁ-ରୋବିନ୍, ଏମାନେ ବି ତୁମ ରାଜ୍ୟର ପ୍ରଜା । ସଭ୍ୟତାର ସ୍ୱାଦ ଚାଖିବା ଅଧିକାର ଏମାନଙ୍କର ବି' ଅଛି ।''

ରୋବିନ୍ କହିଲା, ''ମୁଁ ଆପଣମାନଙ୍କ ପ୍ରସ୍ତାବ ଗ୍ରହଣ କରୁଛି ସାର୍ । ଯାଦୁବିଦ୍ୟା ବଳରେ ଏମାନଙ୍କୁ ମୁଁ ଏବେ ଯେଉଁ ଶାସ୍ତି ଦେଇଛି, କାଲି ସକାଳ ସୁଦ୍ଧା ଏମାନେ ମୋ ବଶ୍ୟତା ସ୍ୱୀକାର କରିଯିବେ । ତା'ପରେ ଏମାନଙ୍କ ଉନ୍ନତି ସମ୍ପର୍କରେ ଚିନ୍ତା କରିବା ।''

ପ୍ରଫେସର ପଚାରିଲେ, ''ଆଚ୍ଛା ରୋବିନ୍, ତମେ କଣ ଏ ଦ୍ୱୀପରେ ସବୁଦିନପାଇଁ ରହିବାକୁ ସ୍ଥିର କରିଛ ? ଆମ ସହିତ ଆମେରିକା ଯିବନାହିଁ ?''

ପ୍ରଫେସରଙ୍କ କଥା ଶୁଣି 'ରୋବିନ' ଠୋ...ଠୋ...ହୋଇ ହସିବାକୁ ଲାଗିଲା । ସେ କହିଲା, ''ମୋ' କଥା ଛାଡ଼ନ୍ତୁ, ଆପଣ ଦୁହେଁ ବି ଯଦି ଆମେରିକା ଫେରିବା ସ୍ୱପ୍ନ ଦେଖୁଛନ୍ତି, ତା'ହେଲେ ତାହା ମିଛ ବୋଲି ଭାବନ୍ତୁ ।''

ରୋବିନର ରହସ୍ୟପୂର୍ଣ୍ଣ କଥା ଶୁଣି ଦୁଇବନ୍ଧୁ ପରସ୍ପର ମୁହଁକୁ ଚାହିଁ ବିସ୍ମୟରେ କହିଲେ, ''ମାନେ... ?''

''ତା' ମାନେ ଆପଣମାନେ ମଧ୍ୟ ଏଠୁ ଆଉ ଯାଉନାହାନ୍ତି । ମୁଁ ପ୍ରଥମରୁ କହିଛି, ଏ କୁହୁକ ଦ୍ୱୀପର ମୁଁ ରାଜା । ସମସ୍ତେ ମୋ' ପ୍ରଜା । ଆପଣମାନେ ମୋ ଅତିଥି । କିନ୍ତୁ ମୋ' ଅନୁମତି ବିନା ଆପଣମାନେ ମୋ' ରାଜ୍ୟରୁ କୁଆଡ଼େ ବି ଯାଇପାରିବେନି । ମୁଁ ଚାହେଁ-ଆପଣ ଦୁହେଁ ମୋ ରାଜ୍ୟରେ ରହନ୍ତୁ । ଏଠି ଆପଣମାନଙ୍କର କିଛି ଅସୁବିଧା ହେବନି । ଖୁବ୍ କମ୍ ଦିନ ଭିତରେ ଏ କୁହୁକଦ୍ୱୀପଟିକୁ ଗୋଟେ ଅତ୍ୟାଧୁନିକ ନଗରୀରେ ମୁଁ ପରିଣତ କରିଦେବି । ଆପଣମାନଙ୍କ ପାଇଁ ଗୋଟେ ବିଜ୍ଞାନ ପ୍ରୟୋଗଶାଳା ପ୍ରତିଷ୍ଠା

କରିଦେବି । ମୋ' ସୁପର ପାୱାର ଆଉ କୁହୁକ ଶକ୍ତି ବଳରେ ସବୁ ଅସମ୍ଭବକୁ ମୁଁ ସମ୍ଭବରେ ପରିଣତ କରିଦେବି । ମୁଁ ଚାହେଁ ଆପଣ ଦୁହେଁ ମୋ ରାଜ୍ୟରେ ରହି ବିଭିନ୍ନ ଗବେଷଣା କାମରେ ମନ ଦିଅନ୍ତୁ ।

''କିନ୍ତୁ ରୋବିନ... !''

ଦୁଇ ବନ୍ଧୁ କିଛି କହିବା ପୂର୍ବରୁ 'ରୋବିନ୍' ଗମ୍ଭୀର କଣ୍ଠରେ ଆଦେଶ ଦେଲା, ''ବାସ୍, ଆଉ ତର୍କବିତର୍କ ନୁହେଁ, ଆଦେଶ ପାଳନ କରିବା ଶିଖନ୍ତୁ । କୁହୁକଦ୍ୱୀପର ରାଜା ହିସାବରେ ମୁଁ ଆଦେଶ କରୁଛି, ଆପଣମାନେ ଏଠାରେ ରହିବେ ।''

ଏତିକି କହୁ କହୁ ହଠାତ ଗୋଟେ ଭୟାନକ ସିଂହ କୁଆଡୁ ଆସି ଠିଆହେଲା ଆଗରେ । ଦୁଇବନ୍ଧୁ ଭୟଭୀତ ହୋଇ ରୋବିନ ପଛପାଖକୁ ଚାଲିଗଲେ । ରୋବିନ୍ ସେମାନଙ୍କୁ ଅଭୟ ଦେଇ କହିଲା, ''ଭୟ କରନ୍ତୁନି, ଏ ମୋର କୁହୁକ ସିଂହ । ୟା'ରି ଉପରେ ସବାର ହୋଇ ଆମେ ରାଜଧାନୀକୁ ଯିବା, ଆସନ୍ତୁ ।''

କହିବା ବାହୁଲ୍ୟ ମାତ୍ର, ସେଇଦିନୁ ଦୁଇ ବୈଜ୍ଞାନିକ ବନ୍ଧୁ 'କୁହୁକ ଦ୍ୱୀପର ରାଜା' ରୋବିନଙ୍କ ଅଧୀନରେ ହିଁ ରହି ଆସୁଛନ୍ତି । ଏ ରହସ୍ୟ ଖୋଦ୍ ଆମେରିକା ସରକାର ବି ଜାଣେ ନାହିଁ ।





ସୁରେନ୍ଦ୍ରନାଥ ସାହୁ

ସୁପର ମ୍ୟାନ୍, ସ୍ପାଇଡର ମ୍ୟାନ୍, କ୍ୟାଟ୍ ଓମ୍ୟାନ୍, ବ୍ୟାଟ୍‌ମ୍ୟାନ୍, ହାରିପୋର୍ଟର ପରି 'ଆକ୍ସନ୍ କମିକ୍'ଗୁଡ଼ିକ ଅତି କଳ୍ପନାମୂଳକ କାହାଣୀ ତଥା ବିଜ୍ଞାନଧର୍ମୀ ଚମତ୍କାରିତା ପାଇଁ ଆଜି ସବୁ ଶ୍ରେଣୀର ପାଠକମାନଙ୍କ ମନରେ ରୋମାଞ୍ଚ ସୃଷ୍ଟି କରିପାରିଛି । ଏହି ବହିଗୁଡ଼ିକ ଚଳଚ୍ଚିତ୍ରରେ ରୂପାୟିତ ହେବାପରେ ଚାଞ୍ଚଲ୍ୟ ଖେଳିଯାଉଛି ସାରା ବିଶ୍ୱରେ । କିନ୍ତୁ ଏହା ସମ୍ଭବ ହୋଇପାରିଛି ଇଂରାଜୀ କିମ୍ବା ହିନ୍ଦୀ ଭାଷାରେ କେବଳ ।

ବିଜ୍ଞାନପ୍ରେମୀ ପାଠକ, ବିଶେଷ କରି ଆମ କିଶୋର-କିଶୋରୀମାନଙ୍କ ମନକୁ ଛୁଇଁବା ପରି ଏ ପ୍ରକାର ଲେଖା ଓଡ଼ିଆରେ ଖୁବ୍ କମ୍। କିନ୍ତୁ 'ହାରିପୋର୍ଟର' ଭଳି ରୋମାଞ୍ଚଭରା ଗପ ପଢ଼ିବା ପାଇଁ ଏହି ପାଠକମାନଙ୍କ ମନରେ ବେଶ୍ ଆଗ୍ରହ ରହିଛି ।

'ମେଜିକ୍ ମେସିନ୍'ର ଗପଗୁଡ଼ିକ ଲେଖକଙ୍କ ଏକ ଅଭିନବ ପ୍ରୟାସ କହିଲେ ଅତ୍ୟୁକ୍ତି ହେବନାହିଁ ।





ସୁଧା ପ୍ରକାଶନ

